# ଶିଶୁ ଉପହାର ଯୋଜନା

## ଆପଣଙ୍କ ପିଲା ବଡ଼ ହୋଇଗଲେ ତାଙ୍କୁ ଯେପରି ସର୍ବୋତ୍ତମ ମିଳେ ସେଥିପାଇଁ ଆପଣଙ୍କ ପକ୍ଷରୁ ଏହା ଏକ ସର୍ବୋତ୍ତମ ପନ୍ଥା!

ହଠାତ ଆପଣ ଦେଖିବେ ଆପଣଙ୍କ 'ଛୋଟ ଶିଶୁଟି' ଆଉ ପିଲା ହୋଇ ନାହିଁ । ତା ଆଗରେ ଖୁବ ବଡ଼ ଏକ ସଂସାର, ଯାହା ଆଗରେ ସେ ଠିଆ ହୋଇଛି ସାମ୍ନାସାମ୍ନି ହୋଇ । ତାକୁ ସେ ସଂସାରର ସବୁ ଦାବିର ମୁକାବିଲା କରିବାକୁ ପଡ଼ିବ ଏହା ସ୍ୱାଭାବିକ । ପିତାମାତା ଭାବରେ ଆପଣ ଚାହାନ୍ତି ସେ ଯେପରି ସର୍ବୋତ୍ତମ ପାଏ — ଆଉ ଏହା ମଧ୍ୟ ସ୍ୱାଭାବିକ ।

ଆପଣ ଉଚିତ ଏକ ପନ୍ଥା ଗ୍ରହଣ କରନ୍ତୁ । ଭବିଷ୍ୟତ ପାଇଁ ସଂଚୟ କରନ୍ତୁ । ଶିଶୁ ଉପହାର ଯୋଜନା ଦ୍ୱାରା ଏହା ସଂଭବ ହୋଇ ପାରିବ । ଏହା ଏକ ଅପୂର୍ବ ଯୋଜନା – ଯଥିରେ ପିଲା ବଢ଼ିବା ସଙ୍ଗେ ସଙ୍ଗେ ସଂଚୟ ବି ବଢ଼ିଯିବ ।

ଆପଣ ଯେତେ ଥର ଚାହାନ୍ତି ଟଙ୍କା ଖଟାଇପାରନ୍ତି । ବର୍ଷକୁ ବର୍ଷ – ଯଦି ଚାହାନ୍ତି । ଯେତେବେଳେ ଆପଣଙ୍କ ପୁଅକୁ 21 ବର୍ଷ ହେବ କିମ୍ବା ଝିଅକୁ 18 ବର୍ଷ ହେବ, ସେତେବେଳେ ଭଲ କିଛି ମୋଟା ଟଙ୍କା ଆପଣ ପାଇପାରିବେ ।

ଏହାଛଡ଼ା, ବାର୍ଷିକ ଲଟରି ଡ୍ର ରହିଛି ! ଯେଉଁଥିରେ ଆପଣ ଆକର୍ଷଣୀୟ ନଗଦ ଟଙ୍କା ପୁରସ୍କାର ବି ଜିତିପାରିବେ ।

ତେଣୁ ଆପଣଙ୍କ ପିଲାକୁ ଦିଅନ୍ତୁ ସବୁଠୁ ସୁନ୍ଦର ଏକ ପୁରସ୍କାର – ଏକ ଉଜ୍ଜ୍ୱଳ ଭବିଷ୍ୟତ ।

ବନ୍ଧୁବାନ୍ଧବ (ପିତାମାତାଙ୍କ ଛଡ଼ା) ଓ ସାଙ୍ଗସାଥୀମାନେ ମଧ୍ୟ ତାଙ୍କର ସ୍ନେହର ସନ୍ତାନମାନଙ୍କ ପାଇଁ ଏହି ଯୋଜନାରେ ଟଙ୍କା ଖଟାଇପାରିବେ ।




**ୟୁନିଟ ଟ୍ରଷ୍ଟ ଅଫ ଇଣ୍ଡିଆ**

(ଏକ ସରକାରି ଆର୍ଥିକ ସଂସ୍ଥା)

ବମ୍ବେ • କଲିକତା • ମାଡ୍ରାସ • ନୂଆ ଦିଲ୍ଲୀ
ଅହମଦାବାଦ • ଗୌହାଟୀ • ଜୟପୁର • କାନପୁର
ଲୁଧିଆନା • ତ୍ରିଚୁର • ବିଜୟୱାଡ଼ା • ଭୁବନେଶ୍ୱର ।

Sista's-UTI-657/85 ORI



# ଜହ୍ନମାମୁଁ

ଫେବ୍ରୁଆରି ୧୯୮୬



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୫୦
ବାର୍ଷିକ ମୂଲ୍ୟ : ୩୦-୦୦

ଆଖି ଫେରିଯାଏ ବାରବାର...
ଦେଖି ଚମକ ସୁପର ରିନ୍ ର !



"ପଲକମାତ୍ରେ କ୍ୟାଚ୍ ଧରିବା ପାଇଁ ସବୁବେଳେ ରେଡି ରହିବା ଦରକାର! ସେଇଥିପାଇଁ ମୁଁ ମୋ ମାଲଟୋଭାକୁ କେବେ ଛାଡ଼େନା!"

— କହନ୍ତି ଅପୂର୍ବ ସ୍ଫୂର୍ତ୍ତି ଓ କ୍ଷିପ୍ରତା ପାଇଁ ପ୍ରସିଦ୍ଧ ଫିଲଡର କେ. ଶ୍ରୀକାନ୍ତ

"ମୋର ସକାଳଟି ମୁଁ ଏହିଭଳି ଆରମ୍ଭ କରେ — ଗୋଟିଏ ମଗ୍ ଗରମ ଗରମ, ସୁସ୍ୱାଦୁ ମାଲଟୋଭା ପିଇନିଏ । ମାଲଟୋଭା ହେଉଛି ଏକମାତ୍ର ପାନୀୟ ଯେଉଁଥିରେ ସମନ୍ୱିତ ଭାବେ ରହିଛି ମଲ୍ଟର ଉତ୍ତମ ଗୁଣ, ତାଜା ସରଭରା ଦୁଗ୍ଧ, ସୁସ୍ୱାଦୁ କୋକୋ ଓ ଚିନି । ଫିଲ୍ଡରେ ଥାଏ ବା ବାହାରେ—ମୋତେ ଏଥିରୁ ସ୍ୱାସ୍ଥ୍ୟ, ବଳ ଓ ଶକ୍ତି ମିଳେ । ପ୍ରତିଦିନ ମାଲଟୋଭା ପିଅନ୍ତୁ, ଦିନକୁ ଦୁଇଥର ଓ ଚ୍ୟାମ୍ପିୟନ ହୋଇ ବଢ଼ି ଉଠନ୍ତୁ ।"



ନୂଆ

**ମାଲଟୋଭା**




**ସ୍ୱାସ୍ଥ୍ୟ, ବଳ ଓ ଶକ୍ତିର ବିଜୟୀ ସଂଯୋଗ**

# ଜହ୍ନମାମୁଁ


ସଂସ୍ଥାପକ : 'ଚକ୍ରପାଣି'

ସଞ୍ଚାଳକ : ନାଗି ରେଡ୍ଡୀ


ପୃଥିବୀରେ କେତେ ସହର ନଗରୀ ଦିନେ ସମୃଦ୍ଧ ଥିଲେ । କାଳକ୍ରମେ ସେସବୁ ଲୁପ୍ତ ହୋଇ ଯାଇଛନ୍ତି । ଅଦ୍ୟାବଧି ସହର ହୋଇ ରହିଥିବା ପ୍ରାଚୀନ ଯୁଗର ସହରମାନଙ୍କ ସଂଖ୍ୟା ଭାରତରେ ସବୁଠାରୁ ଅଧିକ । ଯଥା କାଶୀ, ପୁରୀ, କାଞ୍ଚି, ମଥୁରା, ଦ୍ୱାରକା, ଅଯୋଧ୍ୟା । ଏ ସଂଖ୍ୟାର ଚିତ୍ର କଥାରେ ବର୍ଣ୍ଣିତ ଶିବକ୍ଷେତ୍ର କାଶୀର କାହାଣୀ ।

## ଅମରବାଣୀ

ପରଦୁଃଖଂ ସମାକର୍ଣ୍ଣ୍ୟ ସ୍ୱଭାବସରଳୋ ଜନଃ ।
ଉପକାରାସମର୍ଥତ୍ୱାତ୍ ପ୍ରାପ୍ନୋତି ହୃଦୟେ ବ୍ୟଥାମ୍ ॥

[ସରଳ ସ୍ୱଭାବର ଲୋକେ ଅନ୍ୟର ଦୁଃଖ ଶୁଣି ତା'ର ନିରାକରଣ ଦିଗରେ କିଛି କରି ନ ପାରିଲେ ବ୍ୟଥିତ ହୁଅନ୍ତି ।]


ବର୍ଷ : ୧୯ ଫେବୃଆରି ୧୯୮୭ ଅଙ୍କ : ୮

ପ୍ରତିସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦




## ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



### ଉଡନ୍ତା ଥାଳିଆ

"ଉଡନ୍ତା ଥାଳିଆ" କି ଅନ୍ୟ ଗ୍ରହରୁ ଆସି ପୃଥିବୀ ଉପର ଦେଇ ଉଡି ଯାଉଥିବା ଯାନ ବିଷୟରେ ଯାହା ଶୁଣାଯାଏ, ତାହା ସତ କି ? ଆମେରିକାର ଏଲେନ୍ ହିଷ୍ଟାଲ୍ ବାରମ୍ବାର ଏଭଳି ଯାନ ଦେଖିଲେଣି ଓ କେତେଥର ଅନ୍ୟମାନଙ୍କୁ ଦେଖାଇ ଦେଇଛନ୍ତି ମଧ୍ୟ । କିନ୍ତୁ, ସେ କହନ୍ତି, ଉଡନ୍ତା ଥାଳିଆମାନ ଏକ ପ୍ରକାର ସ୍ୱଚ୍ଛ ବସ୍ତୁରେ ନିର୍ମିତ ବୋଲି ଫୋଟୋ ଉଠାଇଲେ ତାହା ସ୍ପଷ୍ଟ ଦିଶେ ନାହିଁ ।

### ସୌର-ଶକ୍ତି-ପୋତ



ଜାପାନର କେନିଚି ହୋରି ଆଟଲାଣ୍ଟିକ ମହାସାଗର ପାରି ହୋଇଛନ୍ତି—ଗୋଟିଏ ସୌର-ଶକ୍ତିଚାଳିତ ବୋଇତ ଦ୍ୱାରା । ହନଲୁଲୁରୁ ବାହାରି ୨୩୦୦ କି.ମି. ଦୂରବର୍ତ୍ତୀ ଓଟଜିମା ଦ୍ୱୀପରେ ପହଞ୍ଚିବା ନିମନ୍ତେ ତାଙ୍କୁ ୭୫ ଦିନ ଲାଗିଗଲା ।



### ଏସିଆର ଦୀର୍ଘତମ ସେତୁ

ମାଲୟେସିଆର ଉତ୍ତର ପେନାଙ୍ଗ ସହ ମୂଳ ଭୂଖଣ୍ଡର ସଂଯୋଗ ସାଧନା କରୁଥିବା ସମ୍ପ୍ରତି ନିର୍ମିତ ସେତୁ ହେଲା ଏସିଆର ଦୀର୍ଘତମ ଏବଂ ପୃଥିବୀର ତୃତୀୟ ଦୀର୍ଘତମ ସେତୁ ।

## ଜାଣନ୍ତି କି ?

୧. ହୁଏନ୍‌ସାଂଙ୍କ ବର୍ଣ୍ଣିତ ବିଖ୍ୟାତ ବୌଦ୍ଧ ବିଶ୍ୱବିଦ୍ୟାଳୟ ପୁଷ୍ପଗିରି କେଉଁଠାରେ ଥିଲା?
୨. ବୁଦ୍ଧଙ୍କ ଦାନ୍ତ କେଉଁଠାରେ ସୁରକ୍ଷିତ ଅଛି ?
୩. ଚଉଷଠି ଯୋଗିନୀଙ୍କ ମୂର୍ତ୍ତି କେଉଁଠି ଦେଖିବାକୁ ମିଳେ ?
୪. ସ୍ୱାଧୀନତା ପୂର୍ବରୁ ଓଡିଶାର କେଉଁଠାରେ ଫରାସୀ ଉପନିବେଶ ଥିଲା ?
୫. ଫକୀରମୋହନଙ୍କୁ 'ବ୍ୟାସକବି' କୁହାଯାଏ କାହିଁକି ?

(୭୫ ପୃଷ୍ଠାରେ ଉତ୍ତର ଦେଖନ୍ତୁ)

# ରାକ୍ଷସ ଅଙ୍ଗାରକ

ଗୋଟିଏ ପାର୍ବତ୍ୟ ମୁଲକରେ ରହୁଥିଲା ରାକ୍ଷସ ଅଙ୍ଗାରକ । ସେ ଯେପରି ବଳବାନ, ସେହିପରି ଉଦ୍ଧତ ଥିଲା । ରାଜା ସାମନ୍ତ ଓ ସମ୍ଭ୍ରାନ୍ତ ଘରମାନଙ୍କର ଝିଅମାନଙ୍କୁ ଧରି ନେଇଯାଇ ନିଜର ଦାସୀ ରୂପେ ଖଟାଉଥିଲା ।

ସେତିକିବେଳେ ଉଜ୍ଜୟିନୀରେ ରାଜୁତି କରୁଥିଲେ ମହାସେନ । ସେ ଥରେ ତପସ୍ୟା ଦ୍ୱାରା ମାତା ଦୁର୍ଗାଙ୍କୁ ସନ୍ତୁଷ୍ଟ କରି ଗୋଟିଏ ଅସି ଲାଭ କରିଥିଲେ । ଯଦି ସେ ଅତ୍ୟାଚାରୀ କବଳରୁ ନାରୀମାନଙ୍କୁ ରକ୍ଷା କରିବା ନିମନ୍ତେ ସେ ଅସି ବ୍ୟବହାର କରିବେ, ତେବେ ତାଙ୍କୁ ଗୋଟିଏ ପୁରସ୍କାର ମିଳିବ ବୋଲି ଦେବୀ କହିଥିଲେ ।

ଦିନେ ରାଜା ମହାସେନ ବଣ ଭିତରକୁ ଶୀକାର କରିବାକୁ ଯାଇଥାନ୍ତି, ହଠାତ୍ ଗୋଟାଏ ଉନ୍ମତ୍ତ ବାର୍‌ହା ଆସି ତାଙ୍କ ରଥ ଦେହରେ ମୁଣ୍ଡ ଭୁଷି ରଥକୁ ଓଲଟାଇ ଦେଲା । ରାଜା ବାର୍‌ହା ଉପରକୁ ତୀର ମାରିଲେ । କିନ୍ତୁ ସେସବୁ ତା' ଦେହରୁ ଘାସ ଭଳି ଝଡ଼ି ପଡ଼ିଲା । ରାଜା ବାର୍‌ହାକୁ ଅନୁସରଣ କଲେ । ବାର୍‌ହା ଏସକଥା ଜାଣି ପାରିଲା ନାହିଁ । ବାର୍‌ହା ଯାଇ ଗୋଟିଏ ଗୁମ୍ଫା ଭିତରେ ପଶିଲା ।

ରାଜା ଗୁମ୍ଫା କାନ୍ଥରେ କାନଡେରି ଶୁଣିଲେ : ଝିଅଟିଏ ପଚାରୁଛି, "ବାପା, ତମେ ବାର୍‌ହା ରୂପ ନେଇ ବୁଲିଲେ ତମର କେହି କିଛି କରି ପାରିବେ ନାହିଁ ଜାଣେ । କିନ୍ତୁ ମଣିଷ ଅବସ୍ଥାରେ ତମକୁ ଯଦି କେହି ଆକ୍ରମଣ କରେ ?"

"ଝିଅ ! ଚିନ୍ତା ନାହିଁ । ମୋତେ କେହି ମାରି ପାରିବେ ନାହିଁ । ମୋ ବାମ ହାତରେ ମୋ ପ୍ରାଣ । ମୁଁ ସେ ହାତକୁ ହୀରାର ସାଞ୍ଜୁ ଭିତରେ ଢାଙ୍କି ରଖିଥାଏଁ ।"

ରାଜା ଅପେକ୍ଷା କଲେ । ଅଙ୍ଗାରକ ଗୁମ୍ଫାରୁ ବାହାରିବା ମାତ୍ରେ ସେ ତାକୁ ଲଢ଼େଇ ପାଇଁ ଆହ୍ୱାନ ଦେଲେ ଓ ଦେବୀ-ଦତ୍ତ ଅସି ଦ୍ୱାରା ତା'ର ବାମ ହାତ ଛେଦନ କଲେ । ରାକ୍ଷସ ମଲା ।

ରାକ୍ଷସର ଅସାମାନ୍ୟ ସୁନ୍ଦରୀ କନ୍ୟା ଅଙ୍ଗାରବତୀକୁ ରାଜା ମହାସେନ ବିବାହ କଲେ । ସେ ବୁଝିଲେ, ଏହି କନ୍ୟାହିଁ ଭବିଷ୍ୟତ୍‌ବାଣୀରେ କୁହାଯାଇଥିବା ପୁରସ୍କାର ।





# ପାଣି ଓ ପ୍ରକୃତି

ଆରାବଳୀ ପର୍ବତମାଳା ନିକଟରେ ଗୋଟିଏ ଗୁରୁକୁଳ ଥିଲା । ସେ ଗୁରୁକୁଳର ଅଧ୍ୟକ୍ଷ ଥିଲେ ଆଚାର୍ଯ୍ୟ କୃଷ୍ଣଚନ୍ଦ୍ର । ଜଣେ ଗୁଣୀ, କ୍ଷମାଶୀଳ ଓ ପ୍ରଭାବଶାଳୀ ଶିକ୍ଷକ ଭାବରେ ସେ ସୁନାମ ଅର୍ଜନ କରିଥିଲେ । ଆଖପାଖର ଚାରି ପାଞ୍ଚଗୋଟି ରାଜ୍ୟରୁ ବିଦ୍ୟାର୍ଥୀମାନେ ଆସି ତାଙ୍କ ପାଖରୁ ଶିକ୍ଷାଲାଭ କରୁଥିଲେ ।

ଗୁରୁକୁଳ ଜନପଦଠାରୁ ଦୂରରେ ଅବସ୍ଥିତ ଥିଲା । ଏହାକୁ ଗୋଟିଏ ବଣ ଘେରି ରହିଥିଲା । ଗୁରୁକୁଳ ଚାରିପଟେ ଫଳ ଫୁଲର ଉଦ୍ୟାନ ଥିଲା । ସେସବୁ ଉଦ୍ୟାନ ଶିକ୍ଷାର୍ଥୀମାନେ ପ୍ରସ୍ତୁତ କରିଥିଲେ ଓ ସେହିମାନେ ତା'ର ତତ୍ତ୍ୱାବଧାନ କରୁଥିଲେ । ଉଦ୍ୟାନ ବହୁତ ସୁନ୍ଦର ଭାବରେ ବଢ଼ି ଉଠିଥିଲା ।

ଦିନେ ସନ୍ଧ୍ୟାବେଳେ ଆଚାର୍ଯ୍ୟ ଆଶ୍ରମର ଉଦ୍ୟାନ ଆଡ଼େ ବୁଲିବାକୁ ଯାଇ ଦେଖିଲେ, ସୁକାନ୍ତ ନାମକ ଜଣେ ବିଦ୍ୟାର୍ଥୀକୁ ଅନ୍ୟ ଚାରିଜଣ ବିଦ୍ୟାର୍ଥୀ ଧମକଚମକ ଦେଉଛନ୍ତି । ଜଣେ ସୁକାନ୍ତକୁ ଠେଲି ଦେଲା । ସେ ତଳେ ପଡିଗଲା ।

ଆଚାର୍ଯ୍ୟ ଆସୁଥିବାର ଦେଖି ସମସ୍ତେ ଚୁପ୍ ହୋଇ ରହିଗଲେ । ସଙ୍କୋଚ ଯୋଗୁଁ ସମସ୍ତଙ୍କ ମୁଣ୍ଡ ତଳକୁ ହୋଇଗଲା ।

"କଥା କ'ଣ ?" ଆଚାର୍ଯ୍ୟ ଗମ୍ଭୀର ଭାବରେ ପଚାରିଲେ ।

ପ୍ରଥମେ କେହି କିଛି କହିଲେ ନାହିଁ । କିନ୍ତୁ ଗୁରୁଙ୍କ ଆଗରେ ବା କେତେ ସମୟ ଆଉ ସେମାନେ ନୀରବ ରହି ପାରନ୍ତେ ? ଗୁରୁ ପୁଣି ସେମାନଙ୍କୁ କଡ଼ା ଭାବରେ ପ୍ରଶ୍ନଟି ପଚାରିଲେ ।

"ଆଜ୍ଞା ! ଉଦ୍ୟାନରୁ ବାରମ୍ବାର ଫଳ ଚୋରିଯିବା କଥା ଆପଣ ଜାଣନ୍ତି । ଦେଖିବା

"ପାପକୁ ଘୃଣା କର, ପାପୀକୁ ନୁହେଁ ।"



ବେଳକୁ ସୁକାନ୍ତହିଁ ଚୋରି କରୁଛି ।” ବିଦ୍ୟାର୍ଥୀମାନେ ଉତ୍ତର ଦେଲେ ।

“ଆଜ୍ଞା, ସାମାନ୍ୟ କେତୋଟି ଫଳ ତୋଳି ନେଇଥିଲି ବୋଲି ଏମାନେ ମୋତେ ଏମିତି ଦଣ୍ଡ ଦେଉଛନ୍ତି !” ଅଭିଯୋଗ କରିବା କଣ୍ଠରେ ସୁକାନ୍ତ କହିଲା ।

ଆଚାର୍ଯ୍ୟ ସେମାନଙ୍କୁ ଡାକିନେଇ ଗୋଟାଏ ସ୍ଥାନରେ ବସାଇଲେ ଓ କହିଲେ, “ତମେମାନେ ମୋତେ ନ ଜଣାଇ ସୁକାନ୍ତକୁ ଦଣ୍ଡଦେଇ ଭୁଲ୍ କରିଛ ।”

ଛାତ୍ରମାନେ ସମସ୍ତେ ମୁଣ୍ଡ ତଳକୁ କରି ବସି ରହିଲେ । ସୁକାନ୍ତର ମୁହଁ ଉଲ୍ଲସି ଉଠିଲା ।

କିନ୍ତୁ ଆଚାର୍ଯ୍ୟ କହିଲେ, “ସୁକାନ୍ତ ! ତୋର ଧାରଣା ସାମାନ୍ୟ ଫଳ ଚୋରି ବିଶେଷ ଅପରାଧ ନୁହେଁ । ହୁଏତ ନୁହେଁ, କିନ୍ତୁ ଏହି ସାମାନ୍ୟ ଅପରାଧ ତୋତେ ବିଶେଷ ଅପରାଧ ଆଡ଼କୁ ଠେଲି ନେଇଯିବ । ପାଣି ଯେପରି ସାମାନ୍ୟ ସୁଯୋଗ ପାଇଲେ ତଳକୁ ଗଡ଼ିଯାଏ, ମଣିଷର ପ୍ରକୃତି ସେହିପରି ସୁଯୋଗ ପାଇଲେ ତଳ ଆଡ଼କୁ ଗତି କରେ । ତୁ ଆଜି ଫଳ ଚୋରି କଲୁ; ଆଜି ଦଣ୍ଡ ନ ପାଇଲେ କାଲିକି ଅନ୍ୟ କିଛି ଚୋରି କରିବୁ । ଚୋରି କଲେ ବାଧ୍ୟ ହୋଇ ମିଛ କହିବୁ । ଗୋଟିଏ ଅପରାଧରୁ ଅନ୍ୟ ଅପରାଧ କରିବୁ । ଜଣକର ଉଦାହରଣ ଦେଉଛି ।

ଏ ଉଦାହରଣ ଦେବାର କାରଣ, ନିଜ ଭିତରେ ଥିବା ଦୋଷ ଦୁର୍ବଳତାକୁ ନିଜେ ଦୂର ନକରି ଗୁପି ରଖିଲେ ପରିଣତି ବଡ଼ ଖରାପ ହୋଇପାରେ ବୋଲି ତମେମାନେ ଏଥିରୁ ଶିକ୍ଷା ଲାଭ କରିବା ଉଚିତ ।

“ରାମପୁରରେ ସୁନ୍ଦର ବୋଲି ଗୋଟାଏ ପିଲା ଥିଲା । ସେ ବୁଦ୍ଧିମାନ । କିନ୍ତୁ କୁସଙ୍ଗରେ ପଡ଼ି ଧିରେ ଧିରେ ଚୋରି କରିବାକୁ ଶିଖିଗଲା । ବାପା ମା, ବନ୍ଧୁବାନ୍ଧବ ତାକୁ ଘୃଣା କଲେ । ସେଇଠୁ ସେ ଘର ଛାଡ଼ି ଚାଲିଗଲା ଓ ଚୋରି କରି ଚଳିଲା ।

ରାମପୁର ରାଜ୍ୟର ଆରାଧ୍ୟା ଦେବୀଙ୍କ ପାଇଁ ରାଜା ଗୋଟିଏ ବହୁମୂଲ୍ୟ ହୀରା ହାର ଗଢ଼ାଇ

ଆଣିଥାନ୍ତି । ଥରେ ଗୋଟିଏ ବିଶେଷ ଉତ୍ସବରେ ଦେବୀଙ୍କୁ ସେ ହାର ପିନ୍ଧାଇ ଦିଆଗଲା । ସେ ହୀରା ହାର ଏଡ଼େ ସୁନ୍ଦର ହୋଇଥାଏ ଯେ ତା'ର ତୁଳନା ଖଣ୍ଡମଣ୍ଡଳରେ ନଥାଏ । ଉତ୍ସବ ଦିନ ପଡ଼ୋଶୀ ଜମ୍ବୁଖଣ୍ଡ ରାଜ୍ୟର ରାଜା ଆସିଥାନ୍ତି । ସେ ହୀରା ହାର ଦେଖି ଅତିଥି ରାଜାଙ୍କର ଲୋଭ ହେଲା । ସେ ଜମ୍ବୁଖଣ୍ଡ ଫେରିଯାଇ ତାଙ୍କ ମୁଖ୍ୟ ଗୁପ୍ତଚରକୁ ସେକଥା କହିଲେ । ଗୁପ୍ତଚର ହାରଟି ଚୋରାଇ ଆଣିବାର ପ୍ରତିଶ୍ରୁତି ଦେଇ ରାମପୁର ଆସିଗଲା ।

ପ୍ରଥମେ ଗୁପ୍ତଚର ଜଣେ ବଣିକ ବେଶରେ ରାମପୁର ସହରର ଗୋଟିଏ ପାନ୍ଥ ନିବାସରେ ରହିଲା । ସେ ଭକ୍ତ ଭଳି ସବୁଦିନ ସକାଳେ ଓ ସନ୍ଧ୍ୟାବେଳେ ମନ୍ଦିରକୁ ଯିବାକୁ ଲାଗିଲା । ମନ୍ଦିରର ଅବସ୍ଥା ଲକ୍ଷ୍ୟ କରି ସେ ବୁଝିଲା, ରାତିରେ ସବୁ ଭକ୍ତ ଓ ସେବକମାନେ ଯିଏ ଯାହା ଘରକୁ ଚାଲିଯା'ନ୍ତି । ମନ୍ଦିରକୁ ଲାଗି କୌଣସି ଘର ନାହିଁ କି ସେଠି କେହି ରହନ୍ତି ନାହିଁ । ମନ୍ଦିରର ଚାବି ପୂଜାରୀ ପାଖରେ ରହେ । ଗୁପ୍ତଚର ବୁଝିପାରିଲା ଯେ ହୀରା ହାର ଚୋରି କରିବା ନିମନ୍ତେ ଦୁଇଟି ଉପାୟ ଅଛି । ହୁଏତ ମନ୍ଦିରରେ ଅଳ୍ପ ଭକ୍ତ ଥିବା ବେଳେ କେତେଜଣ ଡାକୁଙ୍କୁ ଆଣି ହୀରା ହାର ଲୁଟି ନେବା, ନହେଲେ ପୂଜାରୀ ସାହାଯ୍ୟରେ ଚୋରି କରିବା । ଡକାଏତି କରି ଖସିଯିବା ସହଜ ହେବ ନାହିଁ । ଅତଏବ ଦ୍ୱିତୀୟ ମାର୍ଗହିଁ ସୁବିଧାଜନକ ।





ରାମପୁର ମନ୍ଦିରର ପୂଜାରୀ ସହ ସେ ମିତ୍ରତା ଜମାଇଲା । ନାନା ଉପହାର ଦେଇ ପୂଜାରୀକୁ ବଶ କରି ଦିନେ ହୀରା ହାର ଚୋରାଇବା କଥା ତାକୁ କହିଲା । ହାର ଚୋରାଇ ଦୁହେଁ ଜୟଖଣ୍ଡ ଚାଲିଯିବେ ଏବଂ ସେଠାକାର ରାଜାଙ୍କ ଅନୁଗ୍ରହରେ ପୂଜାରୀ ଭଲରେ ରହିବ, ଏହି କଥା ହେଲା ।

"ମଝି ରାତରେ ପୂଜାରୀ ଆସି ମନ୍ଦିରର ଦ୍ୱାର ଖୋଲିଲା । ଗୁପ୍ତଚର ପାଚେରୀ ଦ୍ୱାର ପାଖରେ ଠିଆ ହେଲା । ମଜା କଥା ହେଲା, ସୁନ୍ଦର ବି ସେ ହାର ଦେଖି ପ୍ରଲୁବ୍ଧ ହୋଇଥାଏ ଏବଂ ସେ ରାତରେ ସେ ଅନ୍ଧାର ଭିତରୁ ମନ୍ଦିରର ପରିସ୍ଥିତି ଲକ୍ଷ୍ୟ କରୁଥାଏ । ମଝି ରାତରେ ପୂଜାରୀ ମନ୍ଦିର ଭିତରେ ପଶିବାର ଦେଖି ତା'ର ସନ୍ଦେହ ହେଲା । ସେ ଗୁପ୍ତଚରର ଆଖି ଏଡ଼ାଇ, ପାଚେରୀ ଟପି ମନ୍ଦିର ଭିତରେ ପଶି ଦେଖିଲା ପୂଜାରୀ ହାର କାଢୁଛି । ସେ ଗମ୍ଭୀର ସ୍ୱରରେ ପଚାରିଦେଲା, 'ଇଏ କ'ଣ କରୁଛ ?'

ପୂଜାରୀ ଚମକି ପଡ଼ିଲା । ସେ ତ ପେଶାଦାର ଚୋର ନୁହେଁ, ଚୋରି କଲାବେଳେ ତାକୁ ବହୁତ ଡର ଲାଗୁଥିଲା । ହଠାତ୍ ଏଭଳି ଧମକରେ ସେ କାନ୍ଦି ପକାଇ ସବୁ ଗପିଗଲା । ସୁନ୍ଦର ତାକୁ କହିଲା କି, ହାର ନେଇ ସେ ନିଜେ ଓ ପୂଜାରୀ ପଳାଇବେ ଓ ଦୁହେଁ ତାକୁ ଅନ୍ୟ ରାଜ୍ୟରେ ବିକି କରି ମୂଲ୍ୟ ବାଣ୍ଟି ନେବେ । ପୂଜାରୀ ଏ ପ୍ରସ୍ତାବରେ ରାଜି ହେଲା । ସୁନ୍ଦର ଧିରେ ଧିରେ ପଛରୁ ଯାଇ ଗୁପ୍ତଚର ମୁଣ୍ଡରେ ପାହାରେ ପିଟିଦେଲା । ସିଏ ଜ୍ଞାନ ହରାଇ ତଳେ ପଡିଗଲା । ପୂଜାରୀ ଓ ସୁନ୍ଦର ହାର ଧରି ଚାଲିଗଲେ ।

କ୍ରମେ ପୂଜାରୀ ମନରେ ଭୟ ସାଙ୍ଗକୁ ଲୋଭ ହେଲା । ସୁନ୍ଦର କାଳେ ତାକୁ ଧରା ପକାଇ ଦେବ, ସେ ଭୟ ଅତ୍ୟନ୍ତ ବଢ଼ିଗଲା । ସୁନ୍ଦର ବି ପୂଜାରୀକୁ ଫାଙ୍କି ଦେଇ କିପରି ହାରଟି ପୁରା ଆତ୍ମସାତ୍ କରିବ, ଏ ଚିନ୍ତା କରୁଥାଏ । ଦୁହେଁ ଦୁହିଙ୍କ ଖାଦ୍ୟରେ ବିଷ ମିଶାଇ ଦେଲେ ଓ ଚେତା ହରାଇ ପଡିଗଲେ ।"

ଏତକ କହିସାରି ଆଚାର୍ଯ୍ୟ ଚେତାଇଦେଲେ, "ସୁକାନ୍ତ ! ଆଜି ସିନା ମୁଁ ମୋ ଛାତ୍ରମାନଙ୍କୁ

ତାଗ୍‌ଦା କରି ତୋତେ ଅଧିକ ଦଣ୍ଡ ପାଇବାରୁ ନିସ୍କୃତି ଦେଲି, କିନ୍ତୁ ତମେ ଯଦି ତୁ ବଡ଼ ଅପରାଧ କରୁ ଏବଂ ସାଧାରଣ ଲୋକଙ୍କ ହାତରେ ବା ସିପାହୀମାନଙ୍କ ହାବୁଡ଼ରେ ପଡ଼ିବୁ, ତୋତେ ନିସ୍କୃତି ଦେବ କିଏ? ସେ କଥା ଛାଡ଼, ତୋ ଶିକ୍ଷାଦୀକ୍ଷାର ମୂଲ୍ୟ କ'ଣ ରହିବ?"

ସୁକାନ୍ତ ତାଢ ପକାଇଲା ଓ କହିଲା, "ଗୁରୁଦେବ! ମୁଁ ଜୀବନରେ ଏ ଶିକ୍ଷା ଭୁଲିବ ନାହିଁ। ଆପଣ ଦେଖିବେ, ମୋ ପ୍ରକୃତିରୁ ମୁଁ ଏଭଳି ଦୁର୍ଗୁଣ ପୁରାପୁରି ନିକାଲି ଦେବ।"

ସୁକାନ୍ତ ଓ ଅନ୍ୟମାନେ ଚାଲିଯିବା ପରେ ଆଗୃଯାଙ୍କ ସ୍ତ୍ରୀ ତାଙ୍କୁ ପଚାରିଲେ, "ପୂଜାରୀ ଓ ସୁନ୍ଦର କ'ଣ ମରିଗଲେ?"

"ପୂଜାରୀ ବୁଢ଼ା ଲୋକ। ସେ ବିଷର ପ୍ରଭାବରୁ କିପରି ଉଭୁରିଥାନ୍ତା? ସେ ମଲା। କିନ୍ତୁ ସୁନ୍ଦର ଜଣେ ସାଧୁଙ୍କ ଦୃଷ୍ଟିକୁ ଆସିଲା। ସେ ତାକୁ ବିଷର ପ୍ରଭାବରୁ ଚିକିତ୍ସା ଦ୍ୱାରା ମୁକ୍ତ କଲେ ଓ ସୁସ୍ଥ କଲେ।" ଆଗୃଯା କହିଲେ।

"ସେ ହାରର କ'ଣ ହେଲା?"

"ସାଧୁ ହାରଟି ନେଇ ରାମପୁର ମନ୍ଦିରରେ ଦେଇ ଆସିଲେ। ସୁନ୍ଦର ରାଜାଙ୍କ ପାଖରେ ସବୁ ମାନିଗଲା। ଗୁପ୍ତଚର ସେତେବେଳକୁ ମରିଯାଇଥାଏ। ସାଧୁଙ୍କ ଯୋଗୁଁ ରାଜା ସୁନ୍ଦରକୁ କିଛି ଦଣ୍ଡ ଦେଲେ ନାହିଁ। ସୁନ୍ଦର କ୍ରମେ ସାଧୁଙ୍କ ବିଶ୍ୱସ୍ତ ଚେଲା ହେଲା ଓ ମୁଁ ଗୁରୁକୁଳରେ ପଢୁଥିବା ବେଳେ ତାକୁ ଜାଣିବାର ସୁଯୋଗ ପାଇଥିଲି। ସେତେ-ବେଳକୁ ସେ ନିଜେ ଜଣେ ସାଧୁ ଭଳି ହୋଇଯାଇଥାଏ। ମୁଁ ବୁଝିଲି ଯେ ସବୁ ଲୋକ ଭିତରେ ଭଲ ହେବାର ସମ୍ଭାବନା ରହିଥାଏ। ତେଣୁ ମୁଁ ପାପ ବା ଅପରାଧକୁ ସିନା ଘୃଣା କରେଁ, ପାପୀ ବା ଅପରାଧୀକୁ ଘୃଣା କରେଁ ନାହିଁ।" ଆଗୃଯା କହିଲେ।





# ଶତ୍ରୁ କିଏ ?

ଜ୍ୟୋତିପୁରରେ ଥିଲେ ଶଙ୍କର ଓ ସୁମନ୍ତ । ସ୍ୱାମୀ ସ୍ତ୍ରୀ ହେଲେ ବି ଦୁହିଙ୍କ ଭିତରେ ସ୍ୱଭାବରେ କିଛି ମେଳ ନଥାଏ । ଶଙ୍କର ଅତ୍ୟନ୍ତ ଧୀରସ୍ଥିର ଏବଂ ଭୋଳ ମଣିଷ । ସୁମନ୍ତିର ସ୍ୱଭାବ ଏପରି ଯେ ପଛରେ ତାକୁ ଗାଁ ଲୋକେ କୁମନ୍ତି ବୋଲି ଡାକୁଥାନ୍ତି । ଉପରେ ପଡ଼ି କଥା କହିବା, ସମସ୍ତଙ୍କ ସାଙ୍ଗରେ ସର୍ବଦା ଝଗଡ଼ା କରିବା, ଏସବୁ ପାଇଁ ସେ ବିଖ୍ୟାତ ଥିଲି ।

ସୁମନ୍ତିର ଏଭଳି ସ୍ୱଭାବ ଯୋଗୁଁ ସବୁଠାରୁ ହଇରାଣ ହେଉଥାନ୍ତି ତା' ପଡ଼ୋଶୀ ମହେନ୍ଦ୍ରର ପରିବାର । କଥା କଥାକେ ସୁମନ୍ତି ମହେନ୍ଦ୍ରର ସ୍ତ୍ରୀ ଓ ପିଲାପିଲିଙ୍କ ସହ ଝଗଡ଼ା କରୁଥାଏ । ସେମାନଙ୍କର ଶ୍ରୀ ସେ ସହି ପାରୁ ନଥାଏ ।

ମହେନ୍ଦ୍ରର ଘର ବାଡିରେ ସୁନ୍ଦର ଶାକ୍-ସବ୍‌ଜି ହେଉଥାଏ । ସୁମନ୍ତି ତା' ମଇଁଷିକୁ ସେ ବାଡିକୁ ଛାଡି ଦେଉଥାଏ । ମଇଁଷି ଯାଇ ସବୁ ଖାଇ ଯାଉଥାଏ ।

ମହେନ୍ଦ୍ର ଯାଇ ଶଙ୍କରକୁ କହିଲା, "ଭାଇ, ତମେ ତମ ମଇଁଷିକୁ ସମ୍ଭାଳି ପାରିବ ନାହିଁ ?"

ପାଖଦେଇ ଯାଉଥିବା ଜଣେ ଗ୍ରାମବାସୀ ଟିପ୍‌ପଣୀ ଦେଲା, "ଆରେ ମହେନ୍ଦ୍ର, ସେ ସିନା ପଶୁ ମଇଁଷିକୁ ସମ୍ଭାଳିବ, କିନ୍ତୁ ତା' ଘରେ ଯେଉଁ ମଣିଷ-ମଇଁଷି ଅଛି, ତାକୁ ସମ୍ଭାଳିବା ଭଳି ତାକତ୍ ତା'ର କାହିଁ ?"

ଶଙ୍କର ଏ ଟିପ୍‌ପଣୀର ଅର୍ଥ ବୁଝିଲା, କିନ୍ତୁ ନୀରବ ରହିଲା । ସୁମନ୍ତିକୁ ପଦେ କହିଲେ ସେ ପାଞ୍ଚପଦ କହିବ । ବହୁତ ଚେଷ୍ଟା କରି ମହେନ୍ଦ୍ର ଥକି ଯାଇଥାଏ । ଆଉ ଚେଷ୍ଟା କରୁ ନଥାଏ ।

"ମହେନ୍ଦ୍ରର ବଗିଚା ଭିତରକୁ ଆମ ମଇଁଷି ପଶୁଛନ୍ତି ?" ଶଙ୍କର କହିଲା ।

"ସେପାଇଁ ମୁଁ କ'ଣ କରିବ? ମଇଁଷିର କ'ଣ ସ୍ୱାଧୀନତା ନାହିଁ ?" ସୁମନ୍ତ ଜବାବ୍ ଦେଲା । ମଇଁଷି ପଶିବା ବନ୍ଦ ହେଲା ନାହିଁ ।

ବାରମ୍ବାର ଏପରି ହେବାରୁ ଥରେ ମହେନ୍ଦ୍ର ଗୋଟାଏ ପ୍ରକାର ବିଷାକ୍ତ ଗଛ ଆଣି ବାଡରେ ଲଗାଇଲା । ସେ ନୂଆ ପ୍ରକାର ଗଛ ନିଶ୍ଚୟ କୌଣସି ଲାଭଜନକ ଗଛ ହୋଇଥିବ ଜାଣି ସୁମନ୍ତ ମହେନ୍ଦ୍ରର ସ୍ତ୍ରୀକୁ ପଚାରିଲା, "ଇଏ କି ଗଛ ?"

"ଗୋଟାଏ ପ୍ରକାର ବିଷାକ୍ତ ଗଛ !" ମହେନ୍ଦ୍ରର ସ୍ତ୍ରୀ କହିଲା ।

ସୁମନ୍ତ ରାଗିଗଲା । ତାକୁ ଯେ ମିଛ କଥା କୁହାଯାଉଛି ବା ଥଟ୍ଟା କରାଯାଉଛି, ଏଥିରେ ତା'ର ସନ୍ଦେହ ନଥିଲା । ରାତିରେ ସେ ମଇଁଷିକୁ ବାଡ ଭିତରକୁ ଛାଡ଼ିଦେଲା । ମଇଁଷି କିଛି ପତ୍ର ଚୋବାଇବା ପରେ ତଳେ ପଡି ଗାଁ ଗାଁ ହେଲା । ସେ ପ୍ରଚୁର ଦୁଧ ଦେଉଥାଏ । ପରଦିନଠାରୁ କିଛି ଖାଇଲା ନାହିଁ କି ଦୁଧ ଦେଲା ନାହିଁ ।

"ମୁଁ ତ କହିଦେଇଥିଲି ଯେ ଆମ ବାଡ଼ରେ ବିଷାକ୍ତ ଗଛ ହୋଇଛି । ତମେ ତଥାପି ମଇଁଷି ଛାଡିଲ କାହିଁକି ?" ମହେନ୍ଦ୍ରର ସ୍ତ୍ରୀ କହିଲା ।

"ଏ ଗାଁରେ ସମସ୍ତେ ମୋର ଶତ୍ରୁ !" ସୁମନ୍ତ ଚିତ୍କାର କରି ବାଟ ଘାଟ କମ୍ପାଇଦେଲା ଓ କହିଲା, "ମୁଁ ବାପଘରକୁ ଚାଲିଲି । ସେଠି ସୁଖରେ ରହିବ ।"



ସେ ଚାଲିଥାଏ । ବିଚରା ଶଙ୍କର ତାକୁ ବୁଝାଇବାକୁ ଚେଷ୍ଟା କରି ପଛେ ପଛେ ଚାଲିଥାଏ ।

ଅଳ୍ପ ଦୂରରେ ଗୋଟିଏ ସରୋବର । ସେଠି ଜ୍ୟୋତିପୁରର ରତ୍ନାକର ବସି ବନ୍ଶିରେ ମାଛ ଧରୁଥାଏ ।

"ଦେଖ, ଦେଖ, ରତ୍ନାକର ଏଣେ ବସି ରହି ଆରାମ କରୁଛି, ତେଣେ ମାଛ ଆସି ତା' ପାଖରେ ଜମା ହେଉଛନ୍ତି । ବିକିବ, ଟଙ୍କା ପାଇବ । ଏହାକୁ କହନ୍ତି ସୌଭାଗ୍ୟ ।"

ସୁମନ୍ତ ଏ ମନ୍ତବ୍ୟ ଦେଇ ରତ୍ନାକରର ମାଛ ଖେଳେଇ ଭିତରକୁ ହାତ ଭର୍ତ୍ତି କରିଦେଲା । ଭିତରେ ଥିଲେ କେତୋଟି

କଙ୍କଡ଼ା । ସେଥିରୁ ଗୋଟିଏ ସୁମନ୍ତର ଆଙ୍ଗୁଳି ଖଣ୍ଡିଆ କରିଦେଲା ।

ଚିତ୍କାର କରି ସୁମନ୍ତ କହିଲା, "ହଇରେ ରତ୍ନାକର! ତୁ ମୋର ଆଜି ଗୋଟିଏ ଶତ୍ରୁ! ଗୋଟିଏ ସ୍ଥାନରେ ମାଛ ଓ କଙ୍କଡ଼ା ରଖନ୍ତି ?"

"ଭାଉଜି! ମାଛ ଓ କଙ୍କଡ଼ା ତ ପୁଣି ଏକା ପୋଖରୀରେ ରହନ୍ତି! ଏକା ପାଛିଆରେ ନ ରହିବେ କିଆଁ ? ମୁଁ ଜାଲ ପକାଇ କଙ୍କଡ଼ା ଧରିଥିଲି । ସେମାନେ ମୋ ଉପରେ ପ୍ରତିଶୋଧ ନ ନେଇ ତମ ଉପରେ ନେଲେ! ଭାଉଜି! ତମ ଅବସ୍ଥା ବନ୍ସୀରେ ମୁଁ ଧରିଥିବା ଏ ମାଛ ଭଳି । ମାଛ ଯଦି ମୁହଁ ଖୋଲି ନଥାନ୍ତା, ତେବେ ଥୋପ ଗିଳି ନଥାନ୍ତା କି ଧରା ପଡ଼ି ନଥାନ୍ତା । ତମେ ସର୍ବଦା ମୁହଁ ଖୋଲି ନିଜ ପାଇଁ ଶତ୍ରୁ ତିଆରି କରି ଚାଲିଛ ପିନା!" ରତ୍ନାକର କହିଲା ।

"ଚୁପ୍ କର! ମୁଁ ଏ ଗାଁ ଛାଡ଼ି ଯାଉଛି ।"

"ଯିବ କୁଆଡ଼େ ? ତମେ ତ ଶତ୍ରୁକୁ ସାଙ୍ଗରେ ଧରି ଯାଉଛ!" ରତ୍ନାକର କହିଲା ।

"ମାନେ ?"

"ମାନେ ହେଲା, ତମ ଶତ୍ରୁ ତମେ ନିଜେ । ଏ କଙ୍କଡ଼ାର ଯେମିତି ଅନ୍ୟକୁ ଆଘାତ କରିବା ସ୍ୱଭାବ, ତମର ବି ସେମିତି ସ୍ୱଭାବ । ସେ ସ୍ୱଭାବ ଯୋଗୁଁ ତମେ ଯୁଆଡ଼େ ଗଲେ ସେଆଡ଼େ ଶତ୍ରୁ ଦେଖିବ । କାହିଁକି ଭଲ ମହେନ୍ଦ୍ରର ବଗିଚାକୁ ତମ ମଇଁଷି ଠେଲି ଦେଉଥିଲ! ଯାଅ, ଯୁଆଡ଼େ ଯାଉଛ ଯାଅ!" ରତ୍ନାକର କହିଲା ।

"କାହିଁକି ଯିବି ? ମୁଁ ତୋ କଥାରେ ଅଛି ? ମୁଁ ମୋ ଘରେ ରହିବି ।" ଏତିକି କହି ସୁମନ୍ତ ଘରକୁ ଫେରିଗଲା । କିନ୍ତୁ ରତ୍ନାକର କଥା ସେ ଭୁଲି ପାରିଲା ନାହିଁ । ସେ ଯେ ନିଜେ ନିଜର ଶତ୍ରୁ, ଏତିକି ବୁଝିପାରିଲା ଓ କ୍ରମେ କ୍ରମେ ତା' ସ୍ୱଭାବ ଓ ବ୍ୟବହାର ବଦଳିବାକୁ ଲାଗିଲା ।






[୧୪]

[ଅଜଣା ପାହାଡ଼ମାଳ ଓ ଉପତ୍ୟକା ଭିତରେ ବୁଲି ବୁଲି ଚନ୍ଦ୍ରବର୍ମା ଗୋଟିଏ କୁଡ଼ିଆରେ ପଶିଲେ । ପରେ ପରେ ଯେଉଁ ବୁଢ଼ାକୁ ଭେଟିଲେ, ସେ ବୁଢ଼ା ପାଖରେ ରହସ୍ୟମୟ ଧୂସର ଦୁର୍ଗରେ ପହଞ୍ଚିବାର ମାନଚିତ୍ର ଥିଲା । ତାକୁ ରାଜାଙ୍କ ଲୋକେ ଖୋଜୁଥିଲେ । ରାଜସୈନ୍ୟମାନେ ଆସିବାର ଜାଣି ବୁଢ଼ା ଖସି ଚାଲିଗଲା । ଚନ୍ଦ୍ରବର୍ମା କବାଟ ଖୋଲିଲେ । ତା'ପରେ...]

କୁଡ଼ିଆ ଭିତରୁ ଚନ୍ଦ୍ରବର୍ମା ବାହାରି ଆସିବାର ଦେଖି ସୈନିକମାନଙ୍କ ସର୍ଦ୍ଦାର ଆଶ୍ଚର୍ଯ୍ୟ ହୋଇଗଲା । ସେ ଓ ତା' ଅନୁଚରମାନେ ସେଠି ବୁଢ଼ାକୁ ପାଇବେ ବୋଲି ଦୃଢ଼ ନିଶ୍ଚିତ ଥିଲେ । ବୁଢ଼ାକୁ ବନ୍ଦୀ କରି ରାଜାଙ୍କ ପାଖକୁ ନେଇଗଲେ ପ୍ରଚୁର ପୁରସ୍କାର ମିଳିବା କଥା । ଚନ୍ଦ୍ରବର୍ମାଙ୍କୁ ଦେଖି ସର୍ଦ୍ଦାର ମୁହଁରେ ବିରକ୍ତି ଓ ହତାଶା ଫୁଟି ଉଠିଲା । ସେ ତାଙ୍କୁ ଥରେ କଟମଟ କରି ଅନାଇ ଦେଖିନେଲା ।

"ତମେ କିଏ ? ସେ ବୁଢ଼ା କାହିଁ ? ଜବାବ୍ ଦିଅ !" ଏହି ପ୍ରଶ୍ନ କରି ସୈନ୍ୟ-ସର୍ଦ୍ଦାର ତରବାରି ବାହାର କଲା ।

ସଙ୍ଗେ ସଙ୍ଗେ ଚନ୍ଦ୍ରବର୍ମା ମଧ୍ୟ ନିଜ ତରବାରି ବାହାର କଲେ ଓ ଜବାବ୍ ଦେଲେ, "ତମେ




କେଉଁ ବୁଢ଼ା କଥା କହୁଛ ମୁଁ ଜାଣେନା। ଆଉ ମୁଁ କିଏ ସେକଥା ଯଦି ଜାଣିବାକୁ ଚାହଁ, ତେବେ ପ୍ରଥମେ କୁହ ତମେ କିଏ!"

ଚନ୍ଦ୍ରବର୍ମାଙ୍କ ସାହସପୂର୍ଣ୍ଣ ଉତ୍ତର ଓ ତରବାରି-ନିଷ୍କାସନ ଦେଖି ସୈନ୍ୟ-ସର୍ଦ୍ଦାର କାବା ହୋଇଗଲା। ସେ ବୁଝିପାରିଲା ଯେ ଚନ୍ଦ୍ରବର୍ମା ଜଣେ ସାଧାରଣ ଯୋଦ୍ଧା ନୁହନ୍ତି।

ସୈନ୍ୟ-ସର୍ଦ୍ଦାର ସଙ୍କୋଚ ଅନୁଭବ କରୁଛି ବୋଲି ବୁଝିପାରି ଚନ୍ଦ୍ରବର୍ମା କଣ୍ଠସ୍ୱର ଟିକିଏ କୋମଳ କରି କହିଲେ, "ତମେମାନେ କାହାର ସୈନିକ ସେକଥା ମୁଁ ଜାଣିବାକୁ ଚାହେଁ। ଆଉ କିଛି ନୁହେଁ। ମୁଁ ତୁମମାନଙ୍କର କୌଣସି ଅନିଷ୍ଟ କରିନାହିଁ। ଯଦି ମୋତେ ଆକ୍ରମଣ କରିବ, ତେବେ ପରିଣତି ପାଇଁ ପ୍ରସ୍ତୁତ ହୁଅ। ଅସିଚାଳନା ସକାଶେ ମୋ ହାତ ସର୍ବଦା କଲବଲ କରୁଥାଏ।"

ସୈନ୍ୟ-ସର୍ଦ୍ଦାର ବୁଝିପାରିଲା ଯେ ଯୁବକଙ୍କୁ ଆକ୍ରମଣ କରି ପରାସ୍ତ କରିବା ସହଜ ନୁହେଁ। ସେ ନିଶ୍ଚୟ କୁଶଳୀ ଯୋଦ୍ଧା ହୋଇଥିବେ। ତା'ଛଡ଼ା ସେ କୁଡିଆର ଦ୍ୱାର ଆଗରେ ଠିଆ ହୋଇଥିଲେ। ପଦେ ପଛକୁ ଚାଲିଗଲେ ସେ ତିନିଦିଗରୁ ସୁରକ୍ଷିତ ହୋଇଯିବେ। ତେଣିକି ତାଙ୍କୁ ଏକାଥରେ ମାତ୍ର ଜଣେ ଆକ୍ରମଣ କରିପାରିବ। ସେ ଜଣକୁ ପରାସ୍ତ କରିବା ଯୁବକଙ୍କ ପକ୍ଷରେ ସହଜ ହେବ।

"ଭଦ୍ର ଯୁବକ! ଆପଣ ଜଣେ କୁଶଳୀ ଯୋଦ୍ଧା ଭଳି ମନେ ହେଉଛନ୍ତି। ଆପଣଙ୍କ ସହ ଲଢ଼ି ଆମର କିଛି ଲାଭ ନାହିଁ। ଆମେ ଜଣେ ବୁଢ଼ାକୁ ଖୋଜୁଥିଲୁଁ। ସେ ଏଇ କୁଡିଆରେ ମିଳିବ ବୋଲି ଆମେ ଆଶା କରୁଥିଲୁଁ। କିନ୍ତୁ ସେ ଯେତେବେଳେ ନାହିଁ, ଆମେ ଆମ ବାଟରେ ଯିବୁଁ; ଆପଣ ଆପଣଙ୍କ ବାଟରେ ଯାଇ ପାରନ୍ତି।"

ଏହା କହି ସର୍ଦ୍ଦାର ଲେଉଟି ଯିବାକୁ ଉଦ୍ୟତ ହେବାରୁ ଚନ୍ଦ୍ରବର୍ମା ପଚାରିଲେ, "ଆଚ୍ଛା, ଆପଣଙ୍କ ରାଜା କିଏ?"

ସର୍ଦ୍ଦାର ଚକିପଡି କହିଲା, "କି ଆଶ୍ଚର୍ଯ୍ୟ! ଏ ରାଜ୍ୟରେ ରହି ପୁଣି ରାଜାଙ୍କ ନାମ ନ ଜାଣିବା ଲୋକ ଅଛନ୍ତି?"

ଚନ୍ଦ୍ରବର୍ମା ହସିଲେ ଓ କହିଲେ, "ବାବୁ! ମୁଁ ଏ ରାଜ୍ୟର ଲୋକ ବୋଲି ଧରନେଲ କାହିଁକି? ମୁଁ କେତେ ରାଜ୍ୟ ବୁଲିଲିଣି। କେତେବେଳେ ଗୋଟାଏ ରାଜ୍ୟର ସୀମା ଅତିକ୍ରମ କରି ଆଉ ଏକ ରାଜ୍ୟରେ ପହଞ୍ଚି ଯାଉଛି, ତା'ର ହିସାବ ରଖିପାରୁ ନାହିଁ। ମୋ ଗୁରୁଦେବ ଦେହ ଛାଡ଼ିବା ପୂର୍ବରୁ ଜଣେ ରାଜାଙ୍କୁ ଭେଟିବା ନିମନ୍ତେ ନିର୍ଦ୍ଦେଶ ଦେଇଥିଲେ। ସେ ରାଜାଙ୍କ ନାମ ଶିବସିଂହ। ମୁଁ ତାଙ୍କୁ ଖୋଜୁଛି। ହେଲା। ତମେ ଏବେ ଯାଅ।"



ଚନ୍ଦ୍ରବର୍ମାଙ୍କ କଥା ଶୁଣି ସୈନ୍ୟମାନେ ଆଶ୍ଚର୍ଯ୍ୟ ହୋଇ ତାଙ୍କ ଆଡ଼େ ଅନାଇଲେ। କୁଡ଼ିଆ ଭିତରକୁ ପଶିଯାଉଥିବାର ଅଭିନୟ କରୁଥିବା ଚନ୍ଦ୍ରବର୍ମାଙ୍କୁ ଅଟକାଇ ସୈନ୍ୟ-ସର୍ଦ୍ଦାର କହିଲା, "ଯୁବକ! ଆପଣଙ୍କ ଗୁରୁ ଯେଉଁ ରାଜା ଶିବସିଂହଙ୍କୁ ଭେଟିବାକୁ ଆପଣଙ୍କୁ ନିର୍ଦ୍ଦେଶ ଦେଇଛନ୍ତି, ସେହି ଶିବସିଂହହିଁ ଏ ରାଜ୍ୟର ରାଜା।"

ଚନ୍ଦ୍ରବର୍ମା ଆନନ୍ଦିତ ହେବାର ଭାବ ଦେଖାଇ କହିଲେ, "ସତେ? ମୋ ଶ୍ରମ ସାର୍ଥକ ହେଲା। ମୁଁ ଧନ୍ୟ ହେଲି ବୋଲିବାକୁ ହେବ। ସେ ରାଜାଙ୍କ ସନ୍ଧାନ ପାଇବି, ଏ ଆଶା ଛାଡ଼ିଦେଇଥିଲି। ଧନ୍ୟବାଦ। ବର୍ତ୍ତମାନ ରାଜାଙ୍କ ଦର୍ଶନ ଯଥାଶୀଘ୍ର ମୋତେ ମିଳିବା ଦରକାର।"

ସୈନ୍ୟ-ସର୍ଦ୍ଦାର ଅର୍ଥପୂର୍ଣ୍ଣ ଆଖିରେ ନିଜ ସୈନ୍ୟମାନଙ୍କୁ ଥରେ ଦେଖିନେଇ ଚନ୍ଦ୍ରବର୍ମାଙ୍କୁ ପଚାରିଲା, "ଯୁବକ! ଆପଣଙ୍କ ଗୁରୁ ଆପଣଙ୍କୁ ଏଭଳି ନିର୍ଦ୍ଦେଶ ଦେବାର କାରଣ?"

"ସର୍ଦ୍ଦାର! ସେ ରହସ୍ୟ ସହଜରେ ଖୋଲି କହିବା କଥା ନୁହେଁ।" ଏତିକି କହି ଚନ୍ଦ୍ରବର୍ମା ଆକାଶ ଆଡ଼େ ଅନାଇ ସତେ ଅବା ନିଜକୁ ନିଜେ କହିଲେ, "ଧୂସର ଦୁର୍ଗ!"

"ଧୂସର ଦୁର୍ଗ!" ଚମକି ପଡ଼ି ସୈନ୍ୟ-ସର୍ଦ୍ଦାର ଉଚ୍ଚାରଣ କଲା। "ତୁମେ କ'ଣ କହୁଛ, ଯୁବକ! ତମେ କ'ଣ ସେ ବିଷୟରେ କିଛି ଜାଣ?"



ଚନ୍ଦ୍ରବର୍ମା ସୈନ୍ୟ-ସର୍ଦ୍ଦାର ଆଡ଼େ ଅନାଇ କହିଲେ, "ମନେହୁଏ ତମକୁ ବି ସେ ବିଷୟରେ କିଛି ଜଣା ଅଛି !"

"ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ସେହି ଧୂସର ଦୁର୍ଗର ରହସ୍ୟ ଜାଣିବା ସକାଶେ ତ ଆମେ ଏ ବଣରେ ଗୋଟିଏ ବୁଢ଼ାକୁ ଖୋଜୁଛୁଁ !" ସୈନ୍ୟ-ସର୍ଦ୍ଦାର କହିଲା ।

ଚନ୍ଦ୍ରବର୍ମା ନିଜ ଡାହାଣ ହାତ ଖୋଲି ତହିଁ ଉପରେ କିଛି ସମୟ ଆଖି ପକାଇ କିଛି ପଢ଼ିବାର ଅଭିନୟ କରି କହିଲେ, "ବେଶ୍, ବେଶ୍, ମୁଁ ବୁଝିଗଲି । ତମ ରାଜାଙ୍କ ଧାରଣା ସେ ବୁଢ଼ା ପାଖରେ ଧୂସର ଦୁର୍ଗକୁ ଯିବାର ନକ୍ସା ରହିଛି । ତମ ରାଜା ସେଥିପାଇଁ ବୁଢ଼ାର ପୁଅ ଦେବଳକୁ କାରାରୁଦ୍ଧ କରି ରଖିଛନ୍ତି, ସେକଥା ବି ମୁଁ ଜାଣି ପାରୁଛି । ଠିକ୍ ନା ନୁହେଁ ? ତମ ରାଜା ବଡ଼ ହେଲ ମଣିଷ ଦେଖୁଛି !"

ସୈନ୍ୟ-ସର୍ଦ୍ଦାର ଆଶ୍ଚର୍ଯ୍ୟ ହୋଇ ଚନ୍ଦ୍ରବର୍ମାଙ୍କ ହାତକୁ ଅନାଇ ପଚାରିଲା, "ମହାଶୟ! ଆପଣ ଏସବୁ ବ୍ୟାପାର କିପରି ଜାଣିଲେ ? ଆପଣଙ୍କ ହାତ କ'ଣ ଆପଣଙ୍କୁ ସବୁ କହି ଦେଉଛି ? ବଡ଼ ଅଦ୍ଭୁତ କଥା ତ !"

"ଅଦ୍ଭୁତ ? କାହା ପାଇଁ ଅଦ୍ଭୁତ ? ତମ ପାଇଁ ନା ମୋ ପାଇଁ ?" ଏହା କହି ଚନ୍ଦ୍ରବର୍ମା ସୈନ୍ୟ-ସର୍ଦ୍ଦାର ଆଡ଼େ ତୀକ୍ଷ୍ଣ ଦୃଷ୍ଟିରେ ଅନାଇ କହିଲେ, "ତମେମାନେ ତୁରନ୍ତ ଏଠାରୁ ଚାଲିଯାଇ ସେ ଢାଲ ପଛପଟ ମୈଦାନରେ ମୋତେ ଅପେକ୍ଷା କର । ମୁଁ ଅଳ୍ପ ସମୟ ପରେ ତମମାନଙ୍କୁ ଭେଟିବି । ତା'ପରେ ଏକାଠି ରାଜା ଶିବସିଂହଙ୍କୁ ଭେଟିବାକୁ ଯିବା ।"

ଚନ୍ଦ୍ରବର୍ମାଙ୍କ ଭିତରେ ଯେ ଅପୂର୍ବ ଶକ୍ତି ରହିଛି, ଏ ବିଷୟରେ ସୈନ୍ୟ-ସର୍ଦ୍ଦାରର କୌଣସି ସନ୍ଦେହ ନଥିଲା । ସେ ନମ୍ର କଣ୍ଠରେ କହିଲା, "ଆପଣଙ୍କର ଯାହା ଆଦେଶ!" ଏହାପରେ ସେ ନିଜ ସୈନ୍ୟମାନଙ୍କୁ ଧରି ତତ୍କ୍ଷଣାତ୍ ଢାଲ ପଛପଟକୁ ଚାଲିଗଲା ।

ଚନ୍ଦ୍ରବର୍ମା ବଣ ପାଖକୁ ଯାଇ ଅଳ୍ପ ଉଚ୍ଚ କଣ୍ଠରେ କହିଲେ, "ଜାମ୍ବବନ୍ତ ! ଗଲ କୁଆଡେ ? ବାହାର ଆସ । ମୁଁ ସବୁ କଥାବାର୍ତ୍ତା

ପକ୍କା କରି ସାରିଲଣି । ଦେବଳ ବି ବିପଦ-ମୁକ୍ତ ହେବ । ତମର ଆଉ ଭୟ କରିବାର କାରଣ ନାହିଁ ।"

ବୁଢ଼ା ବଣ ଭିତରୁ ବାହାରି ଧୀରେ ଧୀରେ ଚନ୍ଦ୍ରବର୍ମାଙ୍କ ପାଖକୁ ଆସି ପଚାରିଲା, "କାହାକୁ ଡାକୁଛ ? ଜାମ୍ବବନ୍ତ କିଏ ?"

"ତମକୁ କ'ଣ ଆଉ ବୁଢ଼ା ବୋଲି ଡାକନ୍ତି ? ଗୋଟାଏ ନାମ ତ ଦରକାର ! ତେଣୁ ଜାମ୍ବବନ୍ତ ବୋଲି ଡାକିଲି । ଶୁଣ ! ତମ ସର୍ତ୍ତ ଅନୁସାରେ ତମ ପୁଅକୁ କାରାଗାରରୁ ମୁକୁଳାଇବି ଏବଂ ଧୂସର ଦୁର୍ଗରୁ ଯାହା ଧନରତ୍ନ ମିଳିବ, ସେଥିରୁ ତମକୁ ଅଂଶ ବି ଦେବି । ବର୍ତ୍ତମାନ ତମେ ଧୂସର ଦୁର୍ଗକୁ ଯିବାର ନକ୍ସା ମୋତେ ଦେଇଦିଅ ।" ଚନ୍ଦ୍ରବର୍ମା କହିଲେ ।

ବୁଢ଼ା ଦ୍ୱିଧା କରି କହିଲା, "ତମକୁ ପୂରା ବିଶ୍ୱାସ କରିବି ତ ?"

"ବିଶ୍ୱାସ ନକରି ବା ତମର ଲାଭ କ'ଣ ହେବ ? ଅନ୍ତତଃ ବିଶ୍ୱାସ କଲେ ତମର ତଥା ତୁମ ପୁଅର ଉପକାର ହେବ । ଶୁଣ । ମୁଁ ଜାଣେ ଯେ ପଶ୍ଚିମ ସମୁଦ୍ର ତଟରେ ଧୂସର ଦୁର୍ଗ ଅବସ୍ଥିତ । ନକ୍ସା ନ ପାଇଲେ ବି ମୁଁ ଖୋଜାଖୋଜି କରି ଦିନେ ନା ଦିନେ ସେଠାରେ ପହଞ୍ଚି ଯିବି । ତେବେ ନକ୍ସା ପାଇଲେ ବହୁତ ସୁବିଧା ହେବ । ସହଜରେ ସେଠାରେ ଯାଇ ପହଞ୍ଚି ପାରିବି । ସମୟ ବଞ୍ଚିଯିବ । ମନରେ ଠିକ୍ ବାଟରେ ଯାଉଛି କି ନାହିଁ ଏ ବିଷୟରେ



ସର୍ବଦା ସନ୍ଦେହ ରହିବ ନାହିଁ । ଏହି ହେଲା କଥା ।" ଚନ୍ଦ୍ରବର୍ମା କହିଲେ ।

ବୁଢ଼ା କିଛି ସମୟ ଚନ୍ଦ୍ରବର୍ମାଙ୍କ ଆଡ଼େ ଅନାଇ ରହି ତା'ପରେ ଧିରେ ଧିରେ ନିଜ ପୋଷାକ ଭିତରୁ ଖଣ୍ଡିଏ ତାଳପତ୍ର ବାହାର କଲା । ତାକୁ ଗୋଟିଏ ଛୋଟ ପଙ୍ଖାକାରରେ ଖୋଲିଲା । ସେଥିରେ ଅନେକ ପ୍ରକାର ରେଖା ଖୋଦିତ ହୋଇଥାଏ ।

"ଦେଖ, ଏହାହିଁ ଧୂସର ଦୁର୍ଗରେ ପହଞ୍ଚିବାର ନକ୍ସା ।" ଏହା କହି ବୁଢ଼ା ସେ ନକ୍ସା ଚନ୍ଦ୍ରବର୍ମାଙ୍କୁ ଧରାଇଦେଲା ।

ଚନ୍ଦ୍ରବର୍ମା ଧ୍ୟାନ ଦେଇ ସେ ନକ୍ସା ଦେଖିଲେ । ସେଥିରେ ପାହାଡ଼, ବଣ ଓ



ପଡ଼ିବା ବେଳକୁ ମୁଁ ବୁଢ଼ା ହେଲିଣି । ନହେଲେ କେବେଠୁଁ ଯାଇ ମୁଁ ଏକା ଏକା ସେ ଦୁର୍ଗରେ ପହଞ୍ଚି ଯାଇଥାନ୍ତି ।” ବୁଢ଼ା କହିଲା ।

ଚନ୍ଦ୍ରବର୍ମା ବୁଢ଼ାର କଥାକୁ ତାଗିଦ୍ କଲାଭଳି ମୁଣ୍ଡ ହଲାଇ କହିଲେ, “ବାସ୍ତବିକ ଏ ବୟସରେ ତମ ପକ୍ଷରେ ଏଭଳି ଶ୍ରମ ସ୍ୱୀକାର ସମ୍ଭବ ହେବ ନାହିଁ । ତେବେ ମୁଁ ଏବେ ବି ଯୁବକ । ମୁଁ ସେ ଦୁର୍ଗ ସନ୍ଧାନରେ ଯିବି । ତମ ପୁଅ ଦେବଳକୁ ସାଙ୍ଗରେ ନେଇଯିବି । ବର୍ତ୍ତମାନ ମୁଁ ରୁଦ୍ରପୁର ଯାଇ ରାଜା ଶିବସିଂହଙ୍କୁ ଭେଟି ସବୁକଥା ବିସ୍ତାରିତ ଭାବରେ କହିବି । ମୁଁ ଏଠାକୁ ଫେରି ଆସିବା ଯାଏ ନିଶ୍ଚିନ୍ତ ହୋଇ ରୁହ ।”

ଗୋଟିଏ ଶ୍ମଶାନର ଚିହ୍ନ ସ୍ପଷ୍ଟ ଭାବରେ ଦେଖାଇ ଦିଆଯାଇଥାଏ । ସମୁଦ୍ର ତଟରେ ଗୋଟିଏ ଉଚ୍ଚ ସ୍ଥାନରେ ଦୁର୍ଗ ବି ଅଙ୍କିତ ହୋଇଥାଏ । ତେବେ ଚିହ୍ନ ଦେଖିଲେ ଧାରଣା ହେବ ସେ ଦୁର୍ଗ ଯେପରି ସର୍ବଦା ପ୍ରବଳ ଧୂଆଁ ରେ ଆଚ୍ଛନ୍ନ ହୋଇ ରହିଛି !

ସେ ନକ୍ସା ଦେଖି ଚନ୍ଦ୍ରବର୍ମାଙ୍କ ମନରେ ଆଶଙ୍କା ହେଲା; ଏ ବଣ, ପାହାଡ଼, ଶ୍ମଶାନ ଇତ୍ୟାଦି ଅତିକ୍ରମ କରି ଧୂସର ଦୁର୍ଗରେ ପହଞ୍ଚିବା କ’ଣ ସହଜ ହେବ ?

“ମୋର ଜଣେ ପୂର୍ବପୁରୁଷ ଏ ଦୁର୍ଗର ସନ୍ଧାନ ପାଇ ଏ ନକ୍ସା ପ୍ରସ୍ତୁତ କରିଥିଲେ । ମୋର ଦୁର୍ଭାଗ୍ୟ, ଏ ନକ୍ସା ମୋ ହାତରେ

ବୁଢ଼ା ତୀବ୍ର ଦୃଷ୍ଟିରେ ଚନ୍ଦ୍ରବର୍ମାଙ୍କୁ ଚାହିଁ କହିଲା, “ଯୁବକ! ତମେ ମୋତେ ଧୋକା ଦେବନାହିଁ ତ ? ଦେଖ, ଏ ବୁଢ଼ା ସହ ବିଶ୍ୱାସଘାତକତା କଲେ ତମର ମହାପାପ ହେବ ।”

“ନା, ମୁଁ ତମକୁ ବା ତମ ପୁଅ ଦେବଳକୁ ଧୋକା ଦେବନାହିଁ । ଯଦି ରାଜା ଶିବସିଂହ ଭଲ ଲୋକ ହୋଇଥିବେ, ତାଙ୍କୁ ବି ଧୋକା ଦେବ ନାହିଁ । କିନ୍ତୁ ଯଦି ମୋତେ କେହି ଧୋକା ଦିଏ...”

ଚନ୍ଦ୍ରବର୍ମା ନିଜ ବକ୍ତବ୍ୟ ଶେଷ କରିବା ପୂର୍ବରୁ ଅଳ୍ପ ଦୂରରୁ ଘୋଡ଼ାର ଟାପୁ ଶବ୍ଦ

ଶୁଣିଲା । ସେ ସୁନ୍ଦରଶଙ୍କୁ ଦୃଷ୍ଟିପାତ କରି ଦେଖିଲେ ସୈନ୍ୟ-ସର୍ଦ୍ଦାର ଘୋଡ଼ା ଝପଟାଇ ଏଣେ ତେଣେ ବୁଲୁଛି । ଚନ୍ଦ୍ରବର୍ମା ବୁଢ଼ା ଆଡ଼େ ବୁଲିପଡ଼ି କହିଲେ, "ମୁଁ ବର୍ତ୍ତମାନ ଏମାନଙ୍କ ସହ ରୁଦ୍ରପୁର ଯାଉଛି । ରାଜା ଶିବସିଂହଙ୍କ ସହ ଦେଖା କରି ସବୁ ଠିକ୍ କରିବି । ତମେ ତମ କୁଡ଼ିଆରେ ଯାଇ ରୁହ । ମୁଁ ଯଥାଶୀଘ୍ର ତମକୁ ଡକାଇବି ଓ ରାଜଧାନୀରେ ତମ ରହିବାର ବ୍ୟବସ୍ଥା କରିଦେବି । ତୁମ ଶେଷ ଜୀବନ ଯେପରି ସୁଖରେ ବିତିବ, ମୁଁ ସେ ବ୍ୟବସ୍ଥା କରିବି ।" ଏହା କହି ଚନ୍ଦ୍ରବର୍ମା ସୈନ୍ୟ-ସର୍ଦ୍ଦାର ଆଡ଼େ ଗଲେ ।



ଚନ୍ଦ୍ରବର୍ମା ଆସୁଥିବାର ଦେଖି ସୈନ୍ୟ-ସର୍ଦ୍ଦାର ଘୋଡ଼ାରୁ ଓହ୍ଲାଇପଡି କହିଲା, "ଯୁବକ ! ଆପଣଙ୍କର ବିଳମ୍ବ ହେବାର ଦେଖି ମୁଁ ଚିନ୍ତିତ ହୋଇଥିଲି । ଏ ସ୍ଥାନ ନିରାପଦ ନୁହେଁ । ମୁଁ ଏ ଘୋଡ଼ା ଆପଣଙ୍କ ସକାଶେ ଆଣିଛି । ଏହା ଉପରେ ସବାର ହୁଅନ୍ତୁ । ଆପଣ ରାଜାଙ୍କ ପାଖକୁ ଯାଉଛନ୍ତି ବୋଲି ମୁଁ ତାଙ୍କ ପାଖକୁ ଖବର ପଠାଇ ଦେଇ ସାରିଛି ।"

"ଶୁଣ ସର୍ଦ୍ଦାର । ମୁଁ ବଣ ଭିତରେ ପଶି ରାଜା ଶିବସିଂହ କିପରି ଲୋକ, ତାହା ଜାଣିବା ନିମନ୍ତେ କେତେକ ଅଶରୀରୀ ଶକ୍ତିଙ୍କୁ ପଚାରିଥିଲି । ସେମାନେ କେହି ରାଜା ବିଷୟରେ ଭଲ କଥା କିଛି କହିଲେ ନାହିଁ । କଥା କ'ଣ ? ତମ ରାଜା କ'ଣ ଦୁଷ୍ଟ ପ୍ରକୃତିର ଲୋକ ?" ଚନ୍ଦ୍ରବର୍ମା ପଚାରିଲେ ।

"ଯୁବକ ! ଆମେ ରାଜ-କର୍ମଚାରୀ । ଆମକୁ ଯଦି ରାଜା ଠିକ୍ ସମୟରେ ଆମ ଦରମା ଗଣ୍ଡାକ ଦେଇଦେଲେ, ତେବେ ସେ ଭଲ ରାଜା । ଯଦି ନ ଦେଲେ, ତେବେ ସେ ଖରାପ ରାଜା । ଆମ ପାଇଁ ରାଜା ଭଲ କି ଖରାପ ତାହା ଏହିପରି ଭାବରେ ନିର୍ଣ୍ଣିତ ହୁଏ । ଅନ୍ୟ କୌଣସି ବିଷୟରୁ ରାଜା ଭଲ କି ମନ୍ଦ, ସେକଥା ପ୍ରଜାଏଁ କହିବେ ନହେଲେ ପ୍ରତିବେଶୀ ରାଜାମାନେ କହିବେ । ଆମେ କ'ଣ ଜାଣୁ ?" ସର୍ଦ୍ଦାର କହିଲା ।

ଚନ୍ଦ୍ରବର୍ମା ବୁଝିପାରିଲେ ଯେ ସୈନ୍ୟ-ସର୍ଦ୍ଦାର କୌଶଳରେ ପ୍ରଶ୍ନର ଯଥାର୍ଥ ଉତ୍ତର ଏଡ଼ାଇ ଗଲା । ତାଙ୍କର ଧାରଣା ହେଲା ଯେ ରାଜା ଶିବସିଂହ ସହଜ ଲୋକ ନୁହେଁ । ତା' ସହ ସତର୍କ ଭାବରେ କାରବାର କରିବାକୁ ପଡ଼ିବ । ସୈନ୍ୟମାନେ ଯେପରି ତାଙ୍କୁ ତାନ୍ତ୍ରିକ ବୋଲି ଧରିନେଇଛନ୍ତି, ରାଜା ମନରେ ବି ସେହିପରି ଧାରଣା ସୃଷ୍ଟି କରି ପାରିଲେ ସୁବିଧା ହେବ । ଧୂସର ଦୁର୍ଗରେ ପହଞ୍ଚିବା ନିମନ୍ତେ ସାଥିରେ ଛୋଟିଆ ସୈନ୍ୟବାହିନୀ ନେଇ ନଗଲେ ନଚଳେ । ସେଥିପାଇଁ ରାଜାର ସାହାଯ୍ୟ ଆବଶ୍ୟକ ।

"ଯୁବକ ! ଆଉ ବିଳମ୍ବ ନକରି ରୁଦ୍ରପୁର ଅଭିମୁଖେ ଯାତ୍ରା କରିବା ଆବଶ୍ୟକ ।" ସୈନ୍ୟ-ସର୍ଦ୍ଦାର କହିଲା ।

"ଠିକ୍ କଥା ।" ଏହା କହି ଚନ୍ଦ୍ରବର୍ମା ଘୋଡ଼ା ଚଢ଼ି ବସିଲେ । ସୈନ୍ୟ-ସର୍ଦ୍ଦାର ଆଗେ ଆଗେ ବାଟ ଦେଖାଇ ଘୋଡ଼ା ଛୁଟାଇଥାଏ ।

ଦୁଇ ଘଣ୍ଟା କାଳ ବଣ ପାହାଡ଼ ଭିତର ଦେଇ ଯାତ୍ରା କରି ସେମାନେ ରୁଦ୍ରପୁରରେ ପହଞ୍ଚିଲେ । ସେଠାରେ ପହଞ୍ଚି ସେମାନେ ଦେଖିଲେ ନଗରର ପଥ ତୋରଣ ଦ୍ୱାରା ଶୋଭିତ । ରାସ୍ତାର ଦୁଇ ପାଖରେ ଲୋକେ ଠିଆ ହୋଇଛନ୍ତି । ଚନ୍ଦ୍ରବର୍ମାଙ୍କୁ ଦେଖି ସେମାନେ ପାଟି କଲେ : "ମହାତାନ୍ତ୍ରିକଙ୍କର ଜୟ !"

ଚନ୍ଦ୍ରବର୍ମାଙ୍କ ବିସ୍ମୟର ସୀମା ରହିଲା ନାହିଁ । ସଙ୍ଗେ ସଙ୍ଗେ ସୈନ୍ୟ-ସର୍ଦ୍ଦାର ଆଗରୁ ଲୋକ ପଠାଇ ତାଙ୍କ ଆସିବା ସମ୍ବାଦ ରାଜାଙ୍କୁ ଦେଇଛି ବୋଲି ତାଙ୍କର ମନେ ପଡ଼ିଗଲା । ସର୍ଦ୍ଦାର ତାଙ୍କୁ ତାନ୍ତ୍ରିକ ବୋଲି ରଟଣ କରିଛି । ବର୍ତ୍ତମାନ ସେ ଧାରଣା ଅନ୍ୟମାନଙ୍କ ଭିତରେ ବଜାୟ ରହିବା ଦରକାର । ଚନ୍ଦ୍ରବର୍ମା ଏକଥା ବି ବୁଝିଲେ ଯେ ରାଜା ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଜଣାଇ ତାଙ୍କୁ ତୁଷ୍ଟ କରି କୌଣସି କାମ ହାସଲ କରିବା ମତଲବ୍‌ରେ ଅଛନ୍ତି ।

(କ୍ରମଶଃ)






# ସ୍ୱପ୍ନରୁ ବାସ୍ତବ

ନିଶା ଗରଜୁଥାଏ । ହୁହାକୁ ହୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମେ ନିଶାର୍ଦ୍ଧରେ ନିଜ ଜୀବନକୁ ପାଣି ଛଡ଼ାଇ ଯେଉଁ କାମ ହାତକୁ ନେଇଛ, ସେଥିରୁ ପ୍ରମାଣ ହେଉଛି ଯେ ତୁମେ ଅତ୍ୟନ୍ତ ସାହସୀ । କିନ୍ତୁ ସାହସହିଁ

## ବେତାଳ କଥା



ଯଥେଷ୍ଟ ନୁହେଁ । ବୁଦ୍ଧି ଓ ବିବେକଜ୍ଞାନ ପ୍ରୟୋଜନ । ସାହସୀ ଓ ବୁଦ୍ଧିମାନ ଲୋକେ ମଧ୍ୟ କପଟ ଥରେ ଥରେ ବୋକାଙ୍କ ଭଳି ବ୍ୟବହାର କରନ୍ତି, ତାର ଗୋଟାଏ ଉଦାହରଣ ଦେଉଛି । ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଲା : ଅନେକ ଦିନ ତଳର କଥା । ପାଟଳିପୁତ୍ର ନଗରୀରେ ଜୟାନନ୍ଦ ନାମକ ଜଣେ ବିଶିଷ୍ଟ ବଣିକ ଥିଲେ । ତାଙ୍କ ଘରେ ଅଭୟ ନାମକ ଜଣେ ଯୁବକ ରହୁଥାଏ । ଅଭୟର ବାପା ଜୟାନନ୍ଦଙ୍କର ବନ୍ଧୁ ଥିଲେ । ଥରେ ଏକାଠି ଦୁଇ ପରିବାର ତୀର୍ଥଯାତ୍ରା କରିବାକୁ ଯାଇଥିବା ବେଳେ ଅଭୟର ବାପା ମା' ଗୋଟିଏ ଦୁର୍ଘଟଣାରେ ପ୍ରାଣ ତ୍ୟାଗ କଲେ । ଅଭୟ ସେତେବେଳେ ପିଲା । ଜୟାନନ୍ଦ ତାକୁ ଆଶ୍ରୟ ଦେଲେ ।

ଅଭୟ ଅତ୍ୟନ୍ତ ଉଚ୍ଚାକାଂକ୍ଷୀ ଯୁବକ ଥିଲା । ଜୟାନନ୍ଦଙ୍କ ଘରେ ଅନେକ ଚାକରବାକର ଥିଲେ । ଅଭୟ ମଧ୍ୟ ପ୍ରାୟ ସେହିମାନଙ୍କ ଭଳି ଚଳୁଥିଲା । ଅବଶ୍ୟ ତାକୁ କେହି କୌଣସି କଠିନ୍ କାମଦାମ ଦେଉ ନଥିଲେ କିମ୍ବା କଡ଼ା କଥା କହୁ ନଥିଲେ । ତଥାପି ସେଭଳି ଭାବରେ ରହିବାକୁ ତାକୁ ସୁଖ ଲାଗୁ ନଥାଏ ।

ଅନେକ ସମୟରେ ସେ ଦିବାସ୍ୱପ୍ନ ଦେଖୁଥାଏ । ସତେ ଯେମିତି ସେ ବଡ଼ଲୋକ ହୋଇ ଯାଇଛି ଓ ଜୟାନନ୍ଦ ତା' ପାଖରେ ଆସି କୃପାପ୍ରାର୍ଥୀ ହୋଇ ଠିଆ ହୋଇଛନ୍ତି !

ଦିନେ ଖଟରେ ସେ ଶୋଇ ରହି ସେମିତି କଳ୍ପନାରେ ମଶ୍‌ଗୁଲ୍ ଥାଏ । ସେଦିନ ଜୟାନନ୍ଦ ଦୂରକୁ ଯାଇଥାନ୍ତି । ଆଖପାଖରେ ବି କେହି ନଥାନ୍ତି । ତେଣୁ ଅଭୟ ମନକୁ ମନ ଧୀର କଣ୍ଠରେ କଥା କହୁଥାଏ : "ଦେଖ ଜୟାନନ୍ଦ ! ମୋ ଭଳି ଯୁବକକୁ ତମେ କନ୍ୟାଦାନ କରିବ, ଏ କଳ୍ପନା କରନାହିଁ ।" ପୁଣି ଜୟାନନ୍ଦ ହୋଇ କହୁଥାଏ, "ବାପା ଅଭୟ ! ଏ ଅଧମ ଜୟାନନ୍ଦର ପ୍ରାର୍ଥନା ମଞ୍ଜୁର କର । ମୋ କନ୍ୟା ସୁଶୀଳାକୁ ଗ୍ରହଣ କରି ମୋ ସାତ ପୁରୁଷଙ୍କୁ କୃତାର୍ଥ କର !"



ହଠାତ୍ ଉତରକୁ ପଶି ଆସିଲେ ଜୟାନନ୍ଦ । ସେ ସେତକବେଳେ ଫେରଥାନ୍ତି । ଆଶ୍ଚର୍ଯ୍ୟ ତଥା ବିରକ୍ତ ହୋଇ ଅଭୟକୁ ତତ୍କ୍ଷଣାତ୍ ତାଙ୍କ ଘରୁ ବାହାରି ଯିବାକୁ କହିଲେ ।

ଅଭୟର ଦୁର୍ଦ୍ଦଶା ଦେଖି ଜୟାନନ୍ଦଙ୍କ କର୍ମଚାରୀମାନେ ହସିଲେ । ଅଭୟ ଭୀଷଣ ଅପମାନ ବୋଧ କଲା ଓ ବାହାରିଗଲା ।

ରାଗ ଓ ଦୁଃଖରେ ସେ ଗୋଟିଏ ବଣରେ ପ୍ରବେଶ କଲା । ସେ ଦେଖିଲା, ଗୋଟିଏ ଗଛ ମୂଳରେ ଜଣେ ତପସ୍ୱୀ ବସିଛନ୍ତି ।

ଅଭୟ ମାସଟିଏ ତପସ୍ୱୀଙ୍କର ସେବା ଶୁଶ୍ରୂଷା କଲା । ଦିନେ ତପସ୍ୱୀ ତାକୁ କହିଲେ, "ବାପା ! ତୁ ଯିନା ଏଠି ରହିଛୁ, କିନ୍ତୁ ତୋ ମନ ଯାଇ ଲୋକାଳୟରେ । ଏଥର ଯା, କୌଣସି ଗ୍ରାମ ବା ସହରରେ ଘରଦ୍ୱାର କରି ରହିବୁ ।"

ଅଭୟ କହିଲା, "ମହାତ୍ମା ! ଆପଣ ଠିକ୍ କହିଛନ୍ତି । କିନ୍ତୁ ଯିବି କୁଆଡ଼େ ?" ସେ ନିଜ ଦୁଃଖ କଥା ଜଣାଇ ପ୍ରାର୍ଥନା କଲା, "ମୋତେ ଏମିତି ବର ଦିଅନ୍ତୁ, ଯାହା ଫଳରେ ଜୟାନନ୍ଦ ମୋତେ ନେହୁରା ହେବେ ।"

"ବାପା ! ଜୟାନନ୍ଦ ପରିଶ୍ରମ କରି ପ୍ରତିଷ୍ଠା ପାଇଛି । ତୁ ବି ସେହିପରି କରିବା ଆବଶ୍ୟକ ।" ତପସ୍ୱୀ କହିଲେ ।

"ମହାଭାଗ ! ଆପଣ ଯାହା କହିଲେ, ସେକଥା ତ ଯେ କୌଣସି ଲୋକ କହି ପାରିଥାନ୍ତା । ଆପଣଙ୍କଠାରୁ ମୁଁ ଯିନା କିଛି ବର ଆଶା କରିଥିଲି !"

ତପସ୍ୱୀ କିଛି ସମୟ ଚୁପ୍ ରହି କହିଲେ, "ହେଉ ବାପା, ମୁଁ ତୋତେ ଗୋଟିଏ ଏପରି ମନ୍ତ୍ର ଦେବି, ଯାହା ସାତଥର ଜପ କରି ତୋର ଯାହା ଇଚ୍ଛା ତାହା ଉପରେ ଗୋଟିଏ ମୁହୂର୍ତ୍ତ ମନୋନିବେଶ କଲେ ତୋ ଇଚ୍ଛା ପୂରଣ ହେବ ।" ଏହା କହି ତପସ୍ୱୀ ତାକୁ ମନ୍ତ୍ରଟି ଶିଖାଇ ଦେଲେ ।

ଅଭୟ ଅତ୍ୟନ୍ତ ପ୍ରସନ୍ନ ହୋଇ ବିଦାୟ ନେବାକୁ ଉଦ୍ୟତ ହେଲା । ସେତେବେଳେ ତପସ୍ୱୀ କହିଲେ, "ବାପା ! ମଣିଷ ଯାହା ଚାହେଁ, ତାହା ସେ ଦୁଇ ପ୍ରକାର ଉପାୟରେ

ପାଇପାରେ । ସ୍ୱାଭାବିକ ଉପାୟରେ ନହେଲେ ଅସ୍ୱାଭାବିକ ଉପାୟରେ । ମଣିଷ ଯାହା ଅସ୍ୱାଭାବିକ ଉପାୟରେ ପାଏ, ତା'ର ପ୍ରତିକ୍ରିୟା ସହ୍ୟ କରିବାକୁ ସେ ପ୍ରସ୍ତୁତ ଥିବା ଆବଶ୍ୟକ । ଶୁଣ । ଯେଉଁ ମନ୍ତ୍ର ତୋତେ ଶିଖାଇ ଦେଲି, ତାହା ତୋ ଜୀବନରେ ତିନ୍ଥର କାମ ଦେବ । ବେଶି ନୁହେଁ ।"

ଅଭୟ ତିନିଦିନ ପରେ ଆସି ପାଟଳିପୁତ୍ରରେ ପହଞ୍ଚିଲା । ସେତେବେଳକୁ ସନ୍ଧ୍ୟା । ସେ ଗୋଟିଏ ଚଟିଘର ବାରନ୍ଦାରେ ଶୋଇ ସ୍ୱପ୍ନ ଦେଖିଲା, ଜୟାନନ୍ଦ ତାକୁ ତାଙ୍କ କନ୍ୟା ସୁଶୀଳାକୁ ସମର୍ପଣ କରୁଛନ୍ତି ।

ନିଦ ଭାଙ୍ଗି ଯିବାରୁ ଅଭୟ ଭାବିଲା, "ଆଉ ଏ ସ୍ୱପ୍ନକୁ ସ୍ୱପ୍ନ ଭାବରେ ରହିବାକୁ ଦେବି କାହିଁକି ? ମୁଁ ଇଚ୍ଛା କଲେ ତ ଏହା ବାସ୍ତବ ହୋଇଯିବ !" ତା'ପରେ ସେ ମନେ ମନେ ମନ୍ତ୍ର ଜପିଲା ଓ ଜୟାନନ୍ଦ ତାକୁ କନ୍ୟାଦାନ କରନ୍ତୁ, ଏହି କାମନା କଲା ।

ତା'ପରେ ତାକୁ ସହଜରେ ନିଦ ଆସିଲା ନାହିଁ । ସତରେ କ'ଣ ମନ୍ତ୍ର ଫଳିବ ? ଯଦି ଫଳେ, ତେବେ କେତେ ମଜା ନ ହେବ !

ରାତି ଶେଷ ହେବା ବେଳକୁ ତାକୁ ନିଦ ଆସି ଯାଇଥିଲା । ସକାଳ ହେଲାଣି । ତଥାପି ସେ ଶୋଇଥାଏ । ହଠାତ୍ ମହୁରି ଓ ଢୋଲ ଶବ୍ଦରେ ତା' ନିଦ ଭାଙ୍ଗିଗଲା । ସେ ଧଡପଡ ଉଠି ବସି ଦେଖେ ତ ଜୟାନନ୍ଦ ଆସି ତା' ଆଗରେ ଠିଆ ହୋଇଛନ୍ତି ।



"ବାପା ! ପଛ କଥା ଭୁଲି ଯାଅ । ଗତରେ ଆମ କୁଳଦେବତା ମୋତେ ସ୍ୱପ୍ନରେ ଦେଖାଦେଇ କହିଲେ କି ତମେ ଏଇଠି ଅଛ । ତମକୁ ମୁଁ ଜାମାତା ରୂପେ ବରଣ କରିବା ଉଚିତ । ଚାଲ ଘରକୁ ଚାଲ ।" ଏହା କହି ଜୟାନନ୍ଦ ନେହୁରା ହୋଇ ଅଭୟର ହାତ ଧରି ତାକୁ ବାହାରେ ଅପେକ୍ଷା କରିଥିବା ପାଲିଙ୍କି ଭିତରେ ନେଇ ବସାଇଦେଲେ । ପରଦିନ ତା' ସହ ତାଙ୍କ ଝିଅର ବାହାଘର ହୋଇଗଲା ।

ଅଭୟର ଆନନ୍ଦ କହିଲେ ନ ସରେ । ସେ ଆରାମରେ ଖାଇ ପିଇ ରହିଥାଏ । କିନ୍ତୁ ଦିନେ ଚାକରମାନେ ନିଜ ନିଜ ଭିତରେ କିଛି ଟିପ୍ପଣୀ ଦେଉଥିବାର ସେ ଶୁଣିଲା । ଜଣେ କହିଲା, "କେଇଦିନ ତଳଯାଏ ସେ ଆମରି ଭଳି ଏ ଘରର ଚାକର ଥିଲା । ବର୍ତ୍ତମାନ ଜୁଆଇଁପଣିଆ ଦେଖାଉଛି ଯେ, ତାକୁ କିନ୍ତୁ ମାନୁନାହିଁ । ଗର୍ବରେ ତା' ଗୋଡ ତଳେ ପଡୁନାହିଁ ।" ଅନ୍ୟମାନେ ଏ ଟିପ୍ପଣୀ ଉପରେ ଆହୁରି ଥଟ୍ଟାଳିଆ ଟିପ୍ପଣୀ ଦେଲେ ।

ଅଭୟର ମନ ଖରାପ ହୋଇଗଲା । ସେହି ଦିନଠୁ ସେ ଲକ୍ଷ୍ୟ କରି ଦେଖିଲା, ସେ କିଛି ଆଦେଶ ଦେଲେ ତାକୁ ସେମାନେ ହାଲୁକା ଭାବରେ ନେଉଛନ୍ତି । କ୍ରମେ ତାକୁ ସେ ପରିସ୍ଥିତି ବିଷମୟ ଲାଗିଲା ।

ଦିନେ ସେ ଯାଇ ତା' ଶ୍ୱଶୁରଙ୍କୁ କହିଲା, "ମହାଶୟ ! ମୁଁ ନିଜେ କିଛି କରିବାକୁ ଚାହେଁ ।"





ଜୟାନନ୍ଦ କହିଲେ, "ତାହା ତ ଅତ୍ୟନ୍ତ ଆନନ୍ଦର ବିଷୟ । ତମେ ମୋ ବ୍ୟବସାୟର କୌଣସି ବିଭାଗ ବୁଝାବୁଝି କର ।"

"ନା । ମୁଁ ଗୋଟିଏ ସ୍ୱତନ୍ତ୍ର ବ୍ୟବସାୟ କରିବାକୁ ଚାହେଁ । ମୋର ଖାଲି ସାମାନ୍ୟ ମୂଳଧନ ଲୋଡ଼ା ।"

ଜୟାନନ୍ଦ ଆପତ୍ତି ନ କରି ଅଭୟ ଯେତିକି ମୂଳଧନ ଚାହିଁଲା, ତାହା ଦେଇଦେଲେ ।

ଅଭୟ ସ୍ତ୍ରୀ ସୁଶୀଳାକୁ ନେଇ ଗୋଟିଏ ବଡ଼ କୋଠାକୁ ଉଠିଗଲା ଓ ମନ୍ତ୍ର ଜପ କରି ସହରରେ ସବୁଠାରୁ ବଡ଼ ଧନୀ ବ୍ୟବସାୟୀ ହେବାର କାମନା କଲା । ମାତ୍ର ତିନିମାସ ଭିତରେ ତା' ବାସନା ପୂର୍ଣ୍ଣ ହେଲା । ସେ ଯେଉଁ ବେପାରରେ ହାତ ଦେଲା, ଆକସ୍ମିକ ଭାବରେ ସେଥିରେ ଲକ୍ଷ ଲକ୍ଷ ଟଙ୍କା ଲାଭ ହେଲା । କିପରି ଭାବରେ ଏହା ହେଉଥାଏ, ସେକଥା ସେ ନିଜେ ବି ବୁଝିପାରୁ ନଥାଏ ।

କିନ୍ତୁ ଅଭୟର ଏଭଳି ଆଶ୍ଚର୍ଯ୍ୟଜନକ ଉନ୍ନତି ଅନ୍ୟ ବ୍ୟବସାୟୀମାନେ ସହ୍ୟ କରି ପାରିଲେ ନାହିଁ । ରାଜଦରବାରରେ ସେମାନଙ୍କର ଅନେକ ପ୍ରଭାବ ଥିଲା । ସେମାନେ ମନ୍ତ୍ରୀ ଓ ଅମାତ୍ୟମାନଙ୍କୁ ଲଗାଇ ରାଜାଙ୍କ କାନରେ ତା' ବିରୁଦ୍ଧରେ ନାନା କଥା ପକାଇଲେ ।

ଦିନେ ରାଜଦରବାରରୁ ତାକୁ ଡାକରା ଆସିଲା । ସେ ଯାଇ ରାଜାଙ୍କୁ ଅଭିବାଦନ କରିବା ମାତ୍ରେ ରାଜା କହିଲେ, "ବାବୁ ! ମାତ୍ର ତିନିମାସ ତଳେ ତମର ନିଜର ବୋଲି କିଛି ନଥିଲା । ତିନିମାସ ଭିତରେ ତମେ ଏପରି ମାତ୍ରାରେ ଧନୀ ହୋଇଗଲ ଯେ ତମ ସହ ପ୍ରତିଯୋଗିତାରେ ଅନ୍ୟ କୌଣସି ବଣିକ ପାରୁନାହାନ୍ତି । କେହି କେହି ଦୁଆଳିଆ ହୋଇ ଗଲେଣି । ଅମାତ୍ୟମାନେ ସନ୍ଦେହ କରୁଛନ୍ତି କି ତମେ କିଛି ଗୁପ୍ତ କାରବାର କରି କିମ୍ବା ଅନ୍ୟ ରାଜ୍ୟର ଡାକୁମାନଙ୍କ ସହ ସମ୍ପର୍କ ରଖି ଏପରି ଧନୀ ହୋଇଛ । ତମେ ଏକ ସପ୍ତାହ ଭିତରେ ତମର ଟିକିନିଖି ହିସାବ ଦାଖଲ କର । ନହେଲେ ତମର ସବୁ ସମ୍ପତ୍ତି ବାଜ୍ୟାପ୍ତ ହେବ ।"

ଅଭୟ ପାଖରେ ହିସାବକିତାବ କିଛି ନଥିଲା । କାରଣ ବାସ୍ତବିକ ତା' ବ୍ୟବସାୟ



ସାଧାରଣ ନିୟମରେ ଚାଲି ନଥିଲା । ସେ ଗମ୍ଭୀର ହୋଇ ଘରକୁ ଫେରିଲା ଓ ସ୍ତ୍ରୀ ସୁଶୀଳାକୁ ସବୁ କହିଲା ।

ରାତିରେ ସେ ସ୍ୱପ୍ନ ଦେଖିଲା, ସେ ପାଟଳିପୁତ୍ରର ରାଜା ହୋଇ ଯାଇଛି ! ନିଦ ଭାଙ୍ଗିବା ମାତ୍ରେ ସେ ଭାବିଲା, ସେ ସ୍ୱପ୍ନକୁ ମଧ୍ୟ ସେ ବାସ୍ତବରେ ପରିଣତ କରିପାରେ ! ଥରେ ରାଜା ହୋଇଗଲେ ନିଶ୍ଚିତ ଆଉ କିଛି ସମସ୍ୟା ବା ବିପଦ ନଥିବ ! ସେ ଆନନ୍ଦରେ ସେକଥା ତା' ସ୍ତ୍ରୀ ସୁଶୀଳାକୁ କହିଲା । ସୁଶୀଳା ସେଥିରେ ଖୁବ୍ ଆନନ୍ଦିତ ହେବ ବୋଲି ସେ ଆଶା କରିଥିଲା । କିନ୍ତୁ ସୁଶୀଳା ନୀରବ ରହିଲା ।

ପରଦିନ ସେ ଯାଇ ରାଜାଙ୍କୁ କହିଲା, "ମହାରାଜ ! ସପ୍ତାହେ ଅପେକ୍ଷା କରିବା ଦରକାର ନାହିଁ । ଆପଣ ମୋର ସମସ୍ତ ସମ୍ପତ୍ତି ବ୍ୟାଜ୍ୟାପ୍ତ କରି ପାରନ୍ତି । ତେବେ ମୋର ଧନୀ ହେବା ପଛରେ କୌଣସି ଚୋରା କାରବାର ବା ଡାକୁଦଳ ସହ ସମ୍ପର୍କ ନାହିଁ ।"

ରାଜା ଆଶ୍ଚର୍ଯ୍ୟ ହୋଇଗଲେ ଓ କିଛି କହିଲେ ନାହିଁ ।

ଅଭୟ ସେଠାରୁ ବାହାରି ସିଧା ବଣ ଭିତରକୁ ଗଲା ଓ ତପସ୍ୱୀଙ୍କୁ ଭେଟି କହିଲା, "ମହାଭାଗ ! ମୁଁ ଦୁଇଥର ଆପଣ ଦେଇଥିବା ମନ୍ତ୍ର ପ୍ରୟୋଗ କରିଛି । ତୃତୀୟ ଥର ପାଇଁ ତାକୁ ପ୍ରୟୋଗ କରିବାକୁ ଚାହେଁ ନାହିଁ । ଆପଣ ସେ ମନ୍ତ୍ରଶକ୍ତି ପ୍ରତ୍ୟାହାର କରି ନିଅନ୍ତୁ ।"

ତପସ୍ୱୀ ହସିଲେ ଓ ଅଭୟର ପିଠି ଥାପୁଡ଼ାଇ ଦେଇ କହିଲେ, "ତୁ ଜ୍ଞାନୀ ।"

"ମହାଭାଗ ! ମୁଁ ପାଟଳିପୁତ୍ର ଛାଡ଼ି ଗଲେ ମଧ୍ୟ ଥରେ ଥରେ ଆସି ଆପଣଙ୍କୁ ଭେଟୁଥିବି ।" ଅଭୟ ପ୍ରଣାମ କରି କହିଲା । ତପସ୍ୱୀ କହିଲେ, "ସ୍ୱାଗତ !" ଅଭୟ ପାଟଳିପୁତ୍ର ଯାଇ ରାଜାଙ୍କୁ ପୁଣି ଭେଟି ତା' ନିଜ ସମ୍ପତ୍ତିର ଚାରିଭାଗରୁ ତିନିଭାଗ ଦେଇଦେଲା ଓ କହିଲା, "ମହାରାଜ, ମୋର ଗୋଟିଏ ଅନୁରୋଧ । ଏ ଧନକୁ ଆପଣ କୌଣସି ହିତକର କାମରେ ଲଗାଇବେ ।"

ବାକି ଚତୁର୍ଥାଂଶ ଧନ ଧରି ସେ ଅନ୍ୟ ଏକ ସହରକୁ ଯାଇ ବ୍ୟବସାୟ କଲା ଓ ପରିଶ୍ରମ କରି କ୍ରମେ ଉନ୍ନତି କଲା ।

ବେତାଳ ଟିକିଏ ଚୁପ୍ ରହି ମୁହାବଳା କରି ଭଳି କଣ୍ଠରେ ରାଜା ବିକ୍ରମାର୍କଙ୍କୁ ପଚାରିଲା, "ରାଜା! ଅଭୟର ଏଭଳି ବୁଦ୍ଧି ଭ୍ରଂଶ ହେଲା କିପରି? ସେ ରାଜା ହୋଇ ପାରିଥାନ୍ତା; ତାହା ନକରି ସେ ତପସ୍ୱୀଙ୍କୁ ଯାଇ ନିଜ ଶକ୍ତି ଫେରାଇଦେଲା କାହିଁକି? ରାଜାଙ୍କୁ ବା କାହିଁକି ଯାଚିକରି ସମ୍ପତ୍ତିର ବିପୁଳାଂଶ ଦେଇଦେଲା? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ। ଉତ୍ତର ଦେବାର ଶକ୍ତି ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, "ଅଭୟର ବୁଦ୍ଧି ଭ୍ରଂଶ ହେବା ତ ଦୂରର କଥା, ତା' ଭିତରେ ସଦ୍‌ବୁଦ୍ଧିର ଉଦୟ ହୋଇଥିଲା। ସେ ବୁଝିଥିଲା ଯେ ଅପ୍ରାକୃତିକ ମାର୍ଗରେ ମଣିଷ ଯାହା ପାଇବ, ତାହା ସହିତ ଅନ୍ୟ ସମସ୍ୟା ଆସିବହିଁ ଆସିବ। ସେ ଜୟାନନ୍ଦଙ୍କ ଜାମାତା ହେଲା, କିନ୍ତୁ ସେଥିଯୋଗୁଁ ଅନ୍ୟମାନଙ୍କ ଥଟ୍ଟାର ପାତ୍ର ହେଲା। ସେ କୋଟିପତି ହେଲା; ସଙ୍ଗେ ସଙ୍ଗେ ରାଜାଙ୍କ ସନ୍ଦେହ ଦୃଷ୍ଟିରେ ପଡ଼ିଲା। ସେ ଯଦି ରାଜା ହୋଇଥାନ୍ତା, ସଙ୍ଗେ ସଙ୍ଗେ ସେହିପରି ଅପ୍ରତ୍ୟାଶିତ ସମସ୍ୟା ବି ଦେଖା ଦେଇଥାନ୍ତା। ହୁଏତ ଶତ୍ରୁ ରାଜା ହାତରେ ବନ୍ଦୀ ହୋଇଥାନ୍ତା, ନଚେତ୍ ରାଜ୍ୟ ଶାସନରେ ଅଭିଜ୍ଞତା ନଥିବା ଯୋଗୁଁ ରାଜ୍ୟକୁ ଦୁର୍ଦ୍ଦଶାଗ୍ରସ୍ତ କରିଥାନ୍ତା। ତେଣୁ ସେ ନିଜ ମନ୍ତ୍ରଶକ୍ତି ଫେରାଇ ଦେଲା। ତା'ର ସୌଭାଗ୍ୟ, ତା' ସ୍ତ୍ରୀ ସୁଶୀଳା ମଧ୍ୟ ଏଭଳି ଅପ୍ରାକୃତିକ ଭାବରେ ଉନ୍ନତି କରିବାକୁ ଉତ୍ସାହ ଦେଉ ନଥିଲା। ସେ ରାଜାଙ୍କୁ ଧନ ଅଂଶ ଦେଇ ଦେବାର କାରଣ, ସେ ନୂଆକରି ପରିଶ୍ରମ ଦ୍ୱାରା ଉପାର୍ଜନ କରିବାକୁ ଚାହୁଁଥିଲା। ମନ୍ତ୍ରବଳରେ ଆସିଥିବା ବିତ୍ତରୁ ସେ ଆଉ ଆନନ୍ଦ ପାଉ ନଥିଲା।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନରାୟ ବୃକ୍ଷ ଡାଳରେ ଝୁଲି ପଡ଼ିଲା।

(କଳ୍ପିତ)








# କାଶୀ ବିଶ୍ୱନାଥ

ପୃଥିବୀର ପ୍ରାଚୀନତମ ନଗରୀମାନଙ୍କ ଭିତରେ କାଶୀ ଗୋଟିଏ। କାଶ ଶବ୍ଦରୁ କାଶୀ ନାମ ହୋଇଥିବ, ଦ୍ୟୁତିସ୍ଥଳ ଏହାର ଅନ୍ୟ ଅର୍ଥ। ଗଙ୍ଗାର ଦୁଇ ଉପନଦୀ ବରୁଣ ଏବଂ ଅସି ମଧ୍ୟରେ ଅବସ୍ଥିତ ବୋଲି ଅନ୍ୟ ନାମ ବାରାଣସୀ।

ବାରାଣସୀ ମହାଦେବଙ୍କ ଅଧିଷ୍ଠାନ କ୍ଷେତ୍ର ଭାବରେ ବିଖ୍ୟାତ। ଅସୁମାରି କାଳରୁ ଏ ନଗରୀରେ ଶିବ ପୂଜାର ପରମ୍ପରା ବଳବତ୍ତର ରହିଛି। ଏଠାରେ ପ୍ରଥମେ କିଏ ଶିବ ପୂଜା ଆରମ୍ଭ କରିଥିଲେ, ସେକଥା ଜଣା ନାହିଁ। ତେବେ ପ୍ରଥମେ ନିର୍ମିତ ମନ୍ଦିର କାହିଁ କେବେଠାରୁ ବିଲୁପ୍ତ ହେଲାଣି।





ଅନେକ କାଳ ପୂର୍ବେ ଦିବୋଦାସ ନାମକ ରାଜା କାଶୀରେ ରାଜୁତି କରୁଥିଲେ। ସେ ଥିଲେ ଜଣେ ଗୁଣବାନ୍ ତଥା ମହତ୍ ରାଜା। କିନ୍ତୁ ସେ ଶିବଙ୍କୁ ଯଥା ବିହିତ ସମ୍ମାନ ଦେଖାଇବାରେ ତ୍ରୁଟି କଲେ। ସେ ବିଷୟରେ ତାଙ୍କୁ ଚେତାଇ ଦେଲାଭଳି କେହି ନଥିଲେ।




ଶିବ ଅସନ୍ତୁଷ୍ଟ ହେଲେ । ସେ ଅବଶ୍ୟ ରାଜା ଦିବୋଦାସଙ୍କର କୌଣସି ଅନିଷ୍ଟ କଲେ ନାହିଁ । ସେ କାଶୀ ନଗରୀ ଛଡ଼ି ଚାଲିଗଲେ । କେବଳ ତାଙ୍କର ବିଶେଷ ଭକ୍ତମାନଙ୍କ ଛଡ଼ା ଅନ୍ୟ କେହି ତାଙ୍କ ବିଦାୟ ବିଷୟରେ କିଛି ଜାଣି ପାରିଲେ ନାହିଁ । ରାଜା ତ ରାଜକାର୍ଯ୍ୟରେ ବ୍ୟସ୍ତ ଥା'ନ୍ତି ।

ଅନେକ ବର୍ଷ ଗଲା । ତାଙ୍କ ବିନା କାଶୀର ହାଲ ଖବର, ତାହା ଜାଣିବା ନିମନ୍ତେ ଦିନେ ଶିବ ତାଙ୍କର କେତେକ ଅନୁଚରଙ୍କୁ ପଠାଇଲେ । ସେମାନେ ଆସି ଗଙ୍ଗା କୂଳରେ ଅବସ୍ଥିତ ସେ ନଗରର ଶୋଭା ଦେଖି ଏମିତି ବିମୋହିତ ହେଲେ ଯେ ଫେରିଯାଇ ଶିବଙ୍କୁ ସେମାନଙ୍କ ବିବରଣୀ ଦେବା କଥା ସେମାନେ ଭୁଲିଗଲେ ।





କିନ୍ତୁ ଦିବୋଦାସଙ୍କୁ ଶ୍ରଦ୍ଧା କରୁଥିଲେ। ଦିନେ ଜଣେ ବ୍ରାହ୍ମଣ ବେଶରେ ଯାଇ ସେ ରାଜାଙ୍କୁ କହିଲେ କି ଖାଲି ଭଲ ମଣିଷ ବା ଉତ୍ତମ ଶାସକ ହେବା ଯଥେଷ୍ଟ ନୁହେଁ । ସେ ଆଧ୍ୟାତ୍ମିକ ଅନ୍ୱେଷଣରେ ବ୍ରତୀ ହେବା ଲୋଡ଼ା । ସେଥିପାଇଁ ସେ ନିୟମିତ ଶିବ ପୂଜା କରିବା ଆବଶ୍ୟକ ।

ରାଜା ଦିବୋଦାସ ସେତେବେଳେ ସଚେତନ ହେଲେ । ସେ ଗୋଟିଏ ବିରାଟ ଶିବ ମନ୍ଦିର ନିର୍ମାଣ କରି ସେଥିରେ ଦିଅଁଙ୍କୁ ପ୍ରତିଷ୍ଠା କଲେ ଓ ଆନ୍ତରିକ ଭାବରେ ତାଙ୍କୁ ପ୍ରାର୍ଥନା କଲେ । ଶିବ ଏଥର କାଶୀ ନଗରୀକୁ ଲେଉଟି ଆସିଲେ ।









ରାଜା ଦିବୋଦାସଙ୍କ ନିର୍ମିତ ମନ୍ଦିର କାଳ ଗର୍ଭରେ ଲୀନ ହୋଇଛି । ତା'ପରେ ବି କେତେଥର ମନ୍ଦିର ପୁନର୍ନିର୍ମିତ ହୋଇଛି । ବର୍ତ୍ତମାନ ଯେଉଁ ମନ୍ଦିର ଦେଖିବାକୁ ମିଳେ, ତାହା ଇନ୍ଦୋରର ବିଖ୍ୟାତ ରାଣୀ ଅହଲ୍ୟା ବାଈଙ୍କ ଦ୍ୱାରା ନିର୍ମିତ । ମନ୍ଦିରର ସ୍ୱର୍ଣ୍ଣଚୂଡ଼ ପଞ୍ଜାବର ରାଜା ରଞ୍ଜିତ୍ ସିଂହ ସ୍ଥାପନ କରିଥିଲେ ।

ଶିବ ସେଠାରେ ବିଶ୍ୱନାଥ ବା ବିଶ୍ୱେଶ୍ୱର ରୂପରେ ପୂଜିତ । ଭାରତବର୍ଷର ସବୁ ଅଞ୍ଚଳରୁ ହଜାର ହଜାର ଭକ୍ତ ସେଠାକୁ ଆସୁଥାନ୍ତି । ଶିବ ପୂଜା ସମ୍ପର୍କିତ ପୁଣ୍ୟ ତିଥିମାନଙ୍କରେ କାଶୀ-ନଗରୀ ଉତ୍ସବ ମୁଖର ହୋଇଉଠେ । ନଗରୀରେ ବିପୁଳ ଭକ୍ତ ସମାବେଶ ହୁଏ ।





ଶିବଙ୍କ ନଗରୀ ପାଖଦେଇ ବହିଯାଉଥିବା ପବିତ୍ର ଗଙ୍ଗାନଦୀରେ ସ୍ନାନ କରିବାକୁ ଭକ୍ତମାନେ ପରମ ସୌଭାଗ୍ୟ ବୋଲି ମନେ କରନ୍ତି । ତେଣୁ କାଶୀର ଘାଟମାନଙ୍କରେ ସର୍ବଦା ଭିଡ ଜମିଥାଏ । କାଶୀରେ ମୃତ୍ୟୁ ଲଭିବା ମଧ୍ୟ ସୌଭାଗ୍ୟ ବୋଲି ଧରାଯାଏ । ଲୋକେ ସେମାନଙ୍କ ମୃତ ଆତ୍ମୀୟମାନଙ୍କ ଶବକୁ ସେଠାକୁ ଆଣି ପୋଡନ୍ତି ।

ଭାରତର ଅନେକ ପୌରାଣିକ କିମ୍ବଦନ୍ତୀର ପୃଷ୍ଠଭୂମି ହେଲା କାଶୀ । ଏକଦା ମହାଦାନୀ ରାଜା ହରିଶ୍ଚନ୍ଦ୍ର ଏଇଠିକାର ଶ୍ମଶାନରେ ପ୍ରହରୀ ରୂପେ କାମ କରୁଥିଲେ । ଅନ୍ୟତ୍ର ଦାସୀ ରୂପେ କାମ କରୁଥିବା ତାଙ୍କ ରାଣୀ ଯେବେ କିଶୋର ପୁତ୍ରର ମୃତଦେହ ନେଇ ସତ୍କାର ପାଇଁ ସେଠି ପହଞ୍ଚିଥିବାର କାହାଣୀ କିଏ ବା ନ ଜାଣେ !






ଅନେକ ମହାପୁରୁଷଙ୍କର ସ୍ମୃତି କାଶୀ ସହ ଜଡିତ । ବୁଦ୍ଧଦେବ, ଶଙ୍କରାଚାର୍ଯ୍ୟ, ରାମାନୁଜ, କବୀର, ନାନକ, ତୁଳସୀଦାସ ଓ ଚୈତନ୍ୟ-ଦେବ କାଶୀ ଭ୍ରମଣ କରିଛନ୍ତି । ହଜାର ହଜାର ବର୍ଷ ତଳେ ପ୍ରତିଷ୍ଠିତ ଏ ନଗରୀ ଅଦ୍ୟାବଧି ପ୍ରାଣୋଚ୍ଛଳ ରହିଛି ।



# ପ୍ରେମ ଜ୍ୟୋତି

ରାଜା ସୋମଚନ୍ଦ୍ର ଥିଲେ ପୋତନମ ନଗରୀର ଶାସକ । ତାଙ୍କ ସ୍ତ୍ରୀ ଧାରିଣୀ ଥିଲେ ଅତ୍ୟନ୍ତ ପତିବ୍ରତା । ପ୍ରସନ୍ନଚନ୍ଦ୍ର ନାମରେ ସେମାନଙ୍କର ପୁଅଟିଏ ଥାଏ ।

ଦିନେ ରାଣୀ ରାଜାଙ୍କର କେଶଗୁଚ୍ଛ ସଜାଡ଼ି ଦେଉଥିଲେ । ସେ ଦେଖିଲେ କେତୋଟି କେଶ ଧଳା ହୋଇ ଯାଇଛି । ରାଣୀ ରାଜାଙ୍କୁ ପରିହାସରେ କିଛି କଥା କହିଲେ; କିନ୍ତୁ ରାଜା କହିଲେ, "ଦେଖ, ଏହା ମୋର ବାର୍ଦ୍ଧକ୍ୟର ସୂଚନା ଦେଉଛି ଅର୍ଥାତ୍ ଜୀବନ କାଳ ଅଳ୍ପ । ତେଣୁ ମୁଁ ସେଇ ସମୟର ସଦୁପଯୋଗ କରିବି । ମୁଁ କେବେ ମଧ୍ୟ ରାଜ୍ୟ ଓ ଐଶ୍ୱର୍ଯ୍ୟମୟ ଜୀବନ ପ୍ରତି ଆସକ୍ତ ନ ଥିଲି । ଏବେ ସମୟ ଆସିଛି ମୁଁ ପୁଅକୁ ରାଜ୍ୟଭାର ଦେଇ ବନଗମନ କରିବି ଓ ସେଠାରେ ତପସ୍ୱୀଙ୍କପରି ଜୀବନ ଯାପନ କରିବି ।"

ପତିବ୍ରତା ସ୍ତ୍ରୀ ଧାରିଣୀ କହିଲେ, "ମହାରାଜ ମୁଁ ବି ଆପଣଙ୍କ ସହିତ ବନଗମନ କରିବି । ମୋର ବା ରାଜ୍ୟରେ ରହିବାରେ ଆଉ କି ଆନନ୍ଦ ରହିବ "

ରାଜା ସୋମଚନ୍ଦ୍ର ପୁତ୍ର ପ୍ରସନ୍ନଚନ୍ଦ୍ରଙ୍କର ଅଭିଷେକ କରି ରାଣୀ ଧାରିଣୀଙ୍କୁ ନେଇ ବନଗମନ କଲେ । ସେତେବେଳେ ରାଣୀ ଥିଲେ ଆସନ୍ନପ୍ରସବା । ଯଥା ସମୟରେ ପୁଅଟିଏ ଜନ୍ମ ହେଲା । ରାଜା ତା'ର ନାମ ରଖିଲେ, "ବଲ୍କଲଚୀର" । ବର୍ଷେ ନ ପୂରୁଣୁ ରାଣୀଙ୍କର ମୃତ୍ୟୁ ହେଲା । ରାଜା ପୁତ୍ରକୁ ଖୁବ୍ ଯତ୍ନରେ ଲାଳନ ପାଳନ କରୁଥା'ନ୍ତି । କ୍ରମେ ସେ ବଡ଼ ହେଲା । ସେ ନିଜର ପିତା ଓ ଅନ୍ୟ ମୁନିଋଷିଙ୍କ ବ୍ୟତୀତ ଆଉ କାହାକୁ ଦେଖି ନଥାଏ । ପୁଣି ପିଲାଦିନରୁ ନାନା ପ୍ରକାର ଯୋଗାଭ୍ୟାସ କରି ସେ



ଏକ ଆଦର୍ଶ ଯୁବକ ଭାବରେ ଜୀବନଯାପନ କରୁଥା'ଏ ।

ରାଜା ପ୍ରସନ୍ନଚନ୍ଦ୍ର ଏସବୁ କଥା ଖବର ପାଇଲେ । ସେ ଚାହିଁଲେ ଯେ ସାନଭାଇଙ୍କୁ ରାଜଭବନକୁ ଆଣି ରାଜବିଦ୍ୟାରେ ଶିକ୍ଷା ଦେବେ, ସେ ଯୁବାବୟସରେ କାହିଁକି ବଣ-ଜଙ୍ଗଲରେ କଷ୍ଟ ସହି ରହିବ । କାଳେ ସେ ଆସିବାକୁ ମଙ୍ଗିବ ନାହିଁ ସେଥିପାଇଁ ରାଜା ପ୍ରସନ୍ନଚନ୍ଦ୍ର କେତେଜଣ ସୁନ୍ଦରୀ ନର୍ତ୍ତକୀଙ୍କୁ ଡାକି କହିଲେ, "ତୁମେମାନେ ତାକୁ ଆକର୍ଷିତ କରି ନେଇଆସ ।"

ନର୍ତ୍ତକୀମାନେ ତପସ୍ୱିନୀ ବେଶ ଧରି ବଲ୍କଲଚୀର ସହିତ ଏକାନ୍ତରେ ଦେଖା କଲେ ଓ ନାନା ମିଠାଇ ସବୁ ଅର୍ପଣ କଲେ । ଏସବୁ ବଲ୍କଲଚୀର ପାଇଁ ଥିଲା ଅଭିନବ ଅନୁଭୂତି ସେ ନର୍ତ୍ତକୀମାନଙ୍କୁ ତପସ୍ୱିନୀ ଭାବି ବହୁତ ସମ୍ମାନ ମଧ୍ୟ କଲେ । ନର୍ତ୍ତକୀମାନଙ୍କୁ ସେମାନଙ୍କ ଆଶ୍ରମ କେଉଁଠି ପଚାରନ୍ତେ ସେମାନେ ଉତ୍ତର ଦେଲେ, "ଆମ ଆଶ୍ରମ ହେଉଛି ପୋତନମ ନଗରୀ । ସେଠାରେ ସବୁ ପ୍ରକାର ସୁଖସୁବିଧା ରହିଛି । ତମେ ଆମ ସହିତ ସେଠାକୁ ଚାଲ ।"

ସୁନ୍ଦରୀ ନର୍ତ୍ତକୀମାନଙ୍କର ମୋହପୂର୍ଣ୍ଣ କଥା ଶୁଣି ବଲ୍କଲଚୀରଙ୍କ ମନରେ ପୋତନମ ଆଶ୍ରମ ଦେଖିବାକୁ ଆଗ୍ରହ ହେଲା । ଇତିମଧ୍ୟରେ ସୋମଚନ୍ଦ୍ରଙ୍କ ଆଗମନର ସୂଚନା ପାଇ ନର୍ତ୍ତକୀ-ମାନେ ଚୁପ୍‌ଚାପ୍ ବଣ ମଧ୍ୟରେ ଲୁଚିଗଲେ ।

କିଛି ସମୟ ପରେ ପିତା ଚାଲିଗଲେ । ବଲ୍କଲଚୀର ମଧ୍ୟ ନର୍ତ୍ତକୀମାନଙ୍କୁ ଖୋଜି ଖୋଜି ବଣ ମଧ୍ୟରେ ଥିବା ରାସ୍ତାରେ କିଛି ଦୂର ଚାଲିଗଲେ । ବଳଦ ଗାଡ଼ିଟିଏ ଯାଉଥାଏ । ସେ ପଚାରିଲେ, "ମୁନିବର, ପୋତନମ ଆଶ୍ରମକୁ ରାସ୍ତା କୁଆଡ଼େ ?"

"ପୋତନମ ଯିବାକୁ ଚାହୁଁଛ ତ ଗାଡ଼ିରେ ବସିପଡ଼ । ଆମେ ସେଇଠାକୁ ଯାଉଛୁ ।" ଗାଡ଼ିବାଲା କହିଲା ।

ଗାଡ଼ିରେ ବସି ବଲ୍କଲଚୀର ପଚାରିଲେ, "ମୁନିବର, ପୋତନମ ଆଶ୍ରମରେ କେଉଁ କେଉଁ ଋଷି ଅଛନ୍ତି । କେତେଜଣ ମୁନିକୁମାର ଅଛନ୍ତି ?"

ତାଙ୍କର ଏପରି ପ୍ରଶ୍ନରେ ଗାଡ଼ିବାଲା ଓ ତା' ସ୍ତ୍ରୀ ହସିବାକୁ ଲାଗିଲେ ।

ରାସ୍ତାରେ ଜଣେ ଡ଼ାକୁ ଗାଡ଼ି ବନ୍ଦ କଲା । କିନ୍ତୁ ଗାଡିବାଲା ଥିଲା ଖୁବ୍ ସାହସୀ । ସେ ହଠାତ୍ ଡ଼ାକୁର ମୁଣ୍ଡରେ ଜୋର୍‌ରେ ଆଘାତ କଲା । ହାତରେ ତ ବାଡ଼ି ଥିଲା । ଡ଼ାକୁ ବେହୋସ୍ ହୋଇ ତଳେ ପଡିଗଲା । ଗାଡ଼ିବାଲା ଓଲଟା ଡ଼ାକୁର ଧନରତ୍ନ ନେଇ ଗାଡି ଚଳାଇ ଚାଲିଲା ।

ପୋତନମରେ ଗାଡ଼ି ପହଞ୍ଚିବା ପରେ ଗାଡ଼ିବାଲା ବଲ୍‌କଲଚୀରଙ୍କୁ କହିଲା, "ପୁଅ, ଦେଖ ଏଇ ହେଉଛି ପୋତନମ ଆଶ୍ରମ, ତୁମର କିଛି ଧନର ମଧ୍ୟ ଆବଶ୍ୟକତା ପଡିପାରେ ନିଅ, ଏତକ ରଖ ।" ଏତିକି କହି ସେ ଡ଼ାକୁ ଧନରୁ କିଛି ତାଙ୍କୁ ଦେଇ ସେଠାରେ ଛାଡିଦେଇ ଚାଲିଗଲା ।

ବଲ୍‌କଲଚୀର ଏଡ଼େ ବଡ଼ ନଗରୀ ଓ ତାହାର ଦୋକାନ, ବଜାର, ସାଜସଜ୍ଜା ଦେଖି ଚକିତ ହେଲେ । ସେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ଯେ ଏପରି ସୁନ୍ଦର ଆଶ୍ରମ ମଧ୍ୟ ଅଛି । ରାସ୍ତାରେ କୌଣସି ଲୋକ ଦେଖିଲେ ତାକୁ "ମୁନିବର, ପ୍ରଣାମ" ବୋଲି କହି ନମସ୍କାର କରୁଥା'ନ୍ତି । ଏମିତି ଚାଲି ଚାଲି ସେ କୌଣସି-ମତେ ଯାଇ ରାଜନର୍ତ୍ତକୀର ଘରେ ପହଞ୍ଚିଲେ ।

ସେଠାରେ ରାଜନର୍ତ୍ତକୀକୁ ସେ କହିଲେ, "ତପସ୍ୱିନୀ ମାତା, ମୋର ରହିବା ପାଇଁ



କୁଟୀରଟିଏ କରାଇ ଦିଅନ୍ତୁ ।" ଏତିକି କହି ପାଖରେ ଥିବା ସମସ୍ତ ଧନ ତା' ହାତରେ ଦେଲେ ।

ରାଜନର୍ତ୍ତକୀ ତା'ର ସେବକମାନଙ୍କୁ ନିର୍ଦ୍ଦେଶ ଦେଲା କି ବଲ୍‌କଲଚୀରଙ୍କୁ ଯେପରି ଭଲ ଭାବରେ ସ୍ନାନ ଓ ଭୋଜନ କରାଇବେ । ରାଜନର୍ତ୍ତକୀ ନିଜ ଝିଅକୁ ବଲ୍‌କଲଚୀରଙ୍କୁ ବିବାହ ଦେବା ପାଇଁ ଇଚ୍ଛା କଲା ।

ସମସ୍ତ ପ୍ରକାର ମଙ୍ଗଳ ବାଦ୍ୟ ବାଜିଲା ଓ ବିବାହର ସମସ୍ତ ବନ୍ଦୋବସ୍ତ କରାଗଲା । ବିଚରା ବଲ୍‌କଲଚୀର ଆଉ କରିବେ କ'ଣ ତାଙ୍କୁ ଯାହା ନିର୍ଦ୍ଦେଶ ଦିଆଯାଉଥାଏ ସେ କିଛି ନ ବୁଝି କରୁଥା'ନ୍ତି ।

ଇତିମଧ୍ୟରେ ସମସ୍ତ ଘଟଣା କେହି ରାଜା ପ୍ରସନ୍ନଚନ୍ଦ୍ରଙ୍କୁ କହି ଦେଇଛି । ସେ ତତ୍‌କ୍ଷଣାତ୍ ସେଠାକୁ ଯାଇ ବିବାହ ବନ୍ଦ କରାଇ ନିଜ ଭାଇକୁ ନିଜର ପରିଚୟ ଦେଇ ରାଜବାଟୀକୁ ନେଇ ଆସିଲେ । କିଛିଦିନ ପରେ ଯେତେବେଳେ ବଲ୍‌କଲଚୀର ରାଜବିଦ୍ୟା ସବୁରେ ଶିକ୍ଷା ସମାପ୍ତ କଲେ ପ୍ରସନ୍ନଚନ୍ଦ୍ର ତାଙ୍କୁ ଏକ ସୁନ୍ଦରୀ ଓ ଗୁଣବତୀ ରାଜକୁମାରୀଙ୍କ ସହିତ ବିବାହ କରାଇ ଦେଲେ ।

କିଛିଦିନ ପରେ ରାଜସେବକମାନେ ପୂର୍ବୋକ୍ତ ଗାଡ଼ିବାଲା ପାଖରେ ଏତେ ଧନ ଦେଖି ସନ୍ଦେହ କରି ରାଜାଙ୍କ ପାଖକୁ ଧରି ଆଣିଲେ । କିନ୍ତୁ ବଲ୍‌କଲଚୀର ସବୁକଥା ରାଜାଙ୍କୁ କହି ତାକୁ ମୁକ୍ତ କରାଇଲେ ।

ଏଣେ ସୋମଚନ୍ଦ୍ର ପୁତ୍ର ବିଚ୍ଛେଦରେ କାନ୍ଦି କାନ୍ଦି ଦୃଷ୍ଟିଶକ୍ତି ହରାଇ ଅନ୍ଧ ହୋଇ ବସିଥା'ନ୍ତି । ବଣରେ ଥିବା ଅନ୍ୟ ମୁନିମାନେ ବଲ୍‌କଲଚୀରଙ୍କ ବିଷୟରେ ଖବର ନେଇ କହିଲେ ଯେ ସେ ପ୍ରସନ୍ନଚନ୍ଦ୍ରଙ୍କ ପାଖରେ ଭଲରେ ଅଛନ୍ତି ।

ଏଣେ ବଲ୍‌କଲଚୀର ରାଜଭବନରେ ଯେତେ ସୁଖ ଐଶ୍ୱର୍ଯ୍ୟରେ ରହିଲେ ମଧ୍ୟ ପିଞ୍ଜିରବଦ୍ଧ ପକ୍ଷୀ ସଦୃଶ ହରାଇଥିବା ମୁକ୍ତ ଜୀବନକୁ ଓ ବିଶେଷତଃ ତାଙ୍କର ସ୍ନେହମୟ ପିତାଙ୍କୁ ସର୍ବଦା ଝୁରି ହେଉଥାନ୍ତି । ଦିନେ ସେ ଭାଇଙ୍କୁ କହିଲେ, "ମୁଁ ଯିମିତି ହେଲେ ପିତାଙ୍କୁ ଦେଖିବାକୁ ଯିବି ।" ତାଙ୍କ କଥା ଶୁଣି ପ୍ରସନ୍ନଚନ୍ଦ୍ର କହିଲେ, "ମୁଁ ବି ଯିବି ।" ଦୁଇଭାଇ ପିତାଙ୍କୁ ଭେଟିବାକୁ ବଣକୁ ଗଲେ । ଦୁଇ ପୁତ୍ରଙ୍କୁ ଭେଟିବା ମାତ୍ରେ ସୋମଚନ୍ଦ୍ର ଆନନ୍ଦରେ ଦୁହିଁଙ୍କୁ ଆଲିଙ୍ଗନ କଲେ । ଚକ୍ଷୁରୁ ଲୋତକଧାରା ବହିବାକୁ ଲାଗିଲା । ସେ ଲୋତକ ଥିଲା ବାତ୍ସଲ୍ୟ ରସର ଅମୀୟ ଧାରା । କ୍ରମେ ସେ ଦୃଷ୍ଟିଶକ୍ତି ଫେରି ପାଇଲେ । ଏହି ଅଲୌକିକ ଘଟଣା ଦେଖି ଅନ୍ୟ ଋଷିମାନେ କହିଲେ, "ଚକ୍ଷୁର ଏହି ନୂତନ ଦୃଷ୍ଟିଶକ୍ତି ହେଉଛି ବାତ୍ସଲ୍ୟ ପ୍ରେମର ଜ୍ୟୋତି ।"





# ଶିବ ପୁରାଣ

ଭଗବାନ୍ ଶିବଙ୍କର ରୁଦ୍ରଗଣ ଓ ରାକ୍ଷସମାନଙ୍କ ମଧ୍ୟରେ ବହୁକାଳ ପର୍ଯ୍ୟନ୍ତ ଯୁଦ୍ଧ ଚାଲିଲା । କିନ୍ତୁ ରାକ୍ଷସମାନେ କୌଣସି ମତେ ହାରିଯାଉ ନଥାନ୍ତି ଦେଖି ଶିବ ଖୁବ୍ ବିସ୍ମିତ ହେଲେ । ସେ ବିଷ୍ଣୁଙ୍କୁ ସ୍ମରଣ କରି ପଚାରିଲେ, "ଏତେଦିନ ଧରି ଯୁଦ୍ଧ ହେଉଛି ଅଥଚ ରାକ୍ଷସ ସଂଖ୍ୟା କ୍ଷୟ ହେଉନାହିଁ ଏହାର କାରଣ କ'ଣ ?"

ବିଷ୍ଣୁ କହିଲେ, "ଶଙ୍ଖଚୂଡ଼ରପତ୍ନୀ ତୁଳସୀର ପତିବ୍ରତା ଧର୍ମ ସେମାନଙ୍କୁ ରକ୍ଷା କରୁଛି । ମୁଁ ତୁଳସୀର ପାତିବ୍ରତ୍ୟ ଭାଙ୍ଗିବାକୁ ଚେଷ୍ଟା କରୁଛି, ଆପଣ ଶଙ୍ଖଚୂଡ଼କୁ ସଂହାର କରନ୍ତୁ ।"

ବିଷ୍ଣୁ ଶଙ୍ଖଚୂଡ଼ର ରୂପ ଧାରଣ କରି ତୁଳସୀଙ୍କ ନିକଟକୁ ଯାଇ କହିଲେ, "ଶିବଙ୍କ ସହିତ ଯୁଦ୍ଧ ବହୁତ ଦିନ ଧରି ଚାଲିଛି । ମୁଁ ଘରକୁ କିଛି ସମୟ ପାଇଁ ବିଶ୍ରାମ କରିବାକୁ ଆସିଛି ।"

ଅନେକ ଦିନ ପରେ ସ୍ୱାମୀ ପ୍ରତ୍ୟାବର୍ତ୍ତନ କରିବାର ଦେଖି ତୁଳସୀ ଆଶ୍ୱସ୍ତ ହେଲେ ।

ତୁଳସୀ ଖୁସି ହୋଇ ସ୍ୱାମୀଙ୍କର ସେବାଯତ୍ନ କରିବାକୁ ଲାଗିଲେ । ସେ ଜାଣି ନଥିଲେ ସ୍ୱୟଂ ବିଷ୍ଣୁ ଛଦ୍ମବେଶରେ ତାଙ୍କୁ ଏପରି ପ୍ରତାରିତ କରିଛନ୍ତି ବୋଲି । ରାତିରେ ହଠାତ୍ ନିଦ ଭାଙ୍ଗି ଯିବାରୁ ତୁଳସୀ ଉଠି ପଡ଼ି ଦେଖିଲେ ତାଙ୍କ ପଲଙ୍କରେ ସ୍ୱାମୀଙ୍କ ବଦଳରେ ଶୋଇଛନ୍ତି ଚତୁର୍ଭୁଜ ବିଷ୍ଣୁ । କାରଣ କୌଣସି ମାୟାରୂପ ନିଦ୍ରାକାଳରେ ରହିପାରେ ନାହିଁ ।

## ୧୨. ନନ୍ଦୀଶ୍ୱରର କାହାଣୀ



ଶିବଙ୍କ ସହ ଶଙ୍ଖଚୂଡ଼ର ଲଢ଼େଇ ଅବ୍ୟାହତ ଥାଏ । ଶିବ ବିଷ୍ଣୁଙ୍କ ସାଫଲ୍ୟକୁ ଅପେକ୍ଷା କରି ଯୁଦ୍ଧ କରି ଯାଉଥାନ୍ତି । ତେବେ ତାଙ୍କୁ ଆଉ ଅଧିକ ସମୟ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ତୁଳସୀ ମନରେ କୌଣସି ସନ୍ଦେହ ପୋଷଣ ନକରି ବିଷ୍ଣୁଙ୍କୁ ଶଙ୍ଖଚୂଡ଼ ବୋଲି ଧରି ନେଇଥାନ୍ତି ।

ଏଣେ ତୁଳସୀଙ୍କ ପାତିବ୍ରତ୍ୟ ଭାଙ୍ଗିବାରୁ ଶଙ୍ଖଚୂଡ଼କୁ ଶିବ ବଧ କଲେ । ତୁଳସୀ ବିଷ୍ଣୁଙ୍କର ଏପରି ଆଚରଣ ଦେଖି ବହୁତ ଦୁଃଖିତ ହେଲେ ଓ ତାଙ୍କୁ ଶାପ ଦେଲେ, "ଆପଣ ଜ୍ଞାନୀ ହୋଇ ଅଜ୍ଞାନୀ ପରି ବ୍ୟବହାର କରିଛନ୍ତି । ଆପଣ ପଥର ହୋଇଯା'ନ୍ତୁ ।"

"ତୁଳସୀ, ତମେ ଲକ୍ଷ୍ମୀଙ୍କର ଅଂଶରେ ଜନ୍ମ ନେଇଛ । କେତେ ସମୟ ପାଇଁ ଅସୁର ପୁରୀରେ ଥାଇ ସବୁ ଭୁଲି ମୋତେ ଶାପ ଦେଲ! ଶଙ୍ଖଚୂଡ଼ ମଧ୍ୟ ମୋର ଅଂଶଜାତ ବୋଲି ମୁଁ ତା' ସହିତ ଯୁଦ୍ଧ କଲିନାହିଁ । ଏବେ ସେ ଶିବଙ୍କ ଦ୍ୱାରା ନିହତ ହୋଇ ତା'ର ମର ଦେହ ଛାଡ଼ି ଦିବ୍ୟ ଦେହ ନେଇ ମୋ ସହିତ ମିଶିଗଲାଣି । ତୁମେ ଚାଲ ମୋ ସହିତ ବୈକୁଣ୍ଠକୁ ସେଠାରେ ଲକ୍ଷ୍ମୀଙ୍କ ସହିତ ମିଶିଯିବ । କିନ୍ତୁ ତୁମ ଶାପ ଅନୁସାରେ ମୁଁ ଗଣ୍ଡକୀ ନଦୀରେ ପବିତ୍ର ଶାଳଗ୍ରାମ ରୂପରେ ବାସ କରିବି । ତୁମର ସ୍ଥାନ ମଧ୍ୟ ସର୍ବଦା ମୋ ମସ୍ତକରେ ରହିବ । ତୁମର ଜନ୍ମର ସାର୍ଥକତା ସେଇଠି ହେବ ଯେତେବେଳେ ତୁମେ ତୁଳସୀ ଗଛ ରୂପରେ ସମସ୍ତଙ୍କୁ ପବିତ୍ର କରିବ । ଏପରିକି ତୁଳସୀ ବିନା ବିଷ୍ଣୁ ପୂଜା ଅସମ୍ଭବ । ତୁମେ ମୋ ସହିତ ମର୍ତ୍ତ୍ୟରେ ସର୍ବଦା ରହିଥିବ । ଏବେ ଚାଲ ବୈକୁଣ୍ଠକୁ ଯିବା ।" ଏହା କହି ବିଷ୍ଣୁ ତୁଳସୀଙ୍କୁ ସାଥିରେ ନେଇ ବୈକୁଣ୍ଠକୁ ଫେରିଗଲେ ।

ପୃଥିବୀ ପୃଷ୍ଠରେ ଏହା ପରେ ତୁଳସୀ ଗଛର ଆବିର୍ଭାବ ଘଟିଲା । ଏହାର ମୃଦୁ ଏବଂ ଅପୂର୍ବ ମହକ ହୃଦୟରେ ସ୍ୱତଃ ଭକ୍ତି ଭାବର ଉଦ୍ରେକ କରିଥାଏ । ଦେବଦେବୀଙ୍କ ପୂଜାରେ ତୁଳସୀ ଏକ ଅମୂଲ୍ୟ ଆବଶ୍ୟକୀୟ ପଦାର୍ଥ । କେବଳ ନୁହେଁ, ମଣିଷର ନାନାବ



ରୋଗ ନିରାମୟ ଦିଗରେ ତୁଳସୀର ଭୂମିକାର ପଟାନ୍ତର ନାହିଁ । ତୁଳସୀ ପତ୍ର ବା ରସ ମଣିଷ ପାଇଁ ଅତ୍ୟନ୍ତ ହିତକର ।

ଗଣ୍ଡକୀ ନଦୀରେ ଶାଳଗ୍ରାମଶିଳା ମିଳେ । ଏ ଶିଳାକୁ ବିଷ୍ଣୁଙ୍କ ପ୍ରତୀକ ଭାବରେ ପୂଜା କରାଯାଏ । ବ୍ରାହ୍ମଣମାନେ ଏହାକୁ କଣ୍ଠ ଲଗ୍ନ କରି ରଖନ୍ତି । ବିଷ୍ଣୁ କହିଥିବା ଅନୁସାରେ ଶାଳଗ୍ରାମ ଉପରେ ତୁଳସୀ ପତ୍ର ସ୍ଥାପନ କରାଯାଏ । ଯୁଗ ଯୁଗ ଧରି ଶାଳଗ୍ରାମ ଓ ତୁଳସୀ, ଏ ଉଭୟେ ଭାରତୀୟମାନଙ୍କ ପାଇଁ ପୂଜାର ଆସ୍ପଦ ହୋଇ ରହିଛନ୍ତି ।

ଶିଳାଦ ନାମରେ ଜଣେ ଋଷି ଥା'ନ୍ତି । ସେ ଗୃହସ୍ଥ ଜୀବନ ଯାପନ କରୁଥାନ୍ତି । ତାଙ୍କର ପିଲା ନ ଥିବାରୁ ସେ ଶିବଙ୍କୁ ତପସ୍ୟା କଲେ । ଶିବ ତାଙ୍କ ସମ୍ମୁଖରେ ଆବିର୍ଭାବ ହୋଇ କହିଲେ, "ଶିଳାଦ, ତୁମ ଭାଗ୍ୟରେ ସନ୍ତାନ ନାହିଁ । ତେବେ ସନ୍ତାନଟିଏ ତମେ ପାଇବ ।"

କିଛିଦିନ ପରେ ଯଜ୍ଞ ପାଇଁ କ୍ଷେତ୍ର ପ୍ରସ୍ତୁତ ହେଉଥିବା ସ୍ଥାନରୁ ସେ ପୁଅଟିଏ ପାଇଲେ । ତା'ର ସଂସ୍କାର ଆଦି କରି ନାମ ରଖିଲେ, "ନନ୍ଦି" । ଦିନେ ଦୁଇଜଣ ଋଷି ସେଠାରୁ ବୁଲି ଆସି ଶିଳାଦଙ୍କୁ କହିଲେ ନନ୍ଦିର ଜୀବନକାଳ ବହୁତ ଅଳ୍ପ । ଏକଥା ଶୁଣି ଶିଳାଦ ପୁଣି ଦୁଃଖରେ ମଗ୍ନ ହେଲେ । ପିତାଙ୍କ ଦୁଃଖର କାରଣ ଜାଣିବା ପରେ ନନ୍ଦି ଶିବଙ୍କୁ ତପସ୍ୟା କଲେ । ନନ୍ଦିଙ୍କର ଘୋର ତପସ୍ୟାରେ ଶିବ ମୁଗ୍ଧ ହୋଇ ତାଙ୍କୁ ଦୀର୍ଘାୟୁ କଲେ ଓ ତାଙ୍କୁ ନନ୍ଦୀଶ୍ୱର ଭାବରେ ନାମିତ କରି ରୁଦ୍ରଗଣ ଭାବରେ ଅଭିଷେକ କଲେ । ଅଭିଷେକରେ ଶିବ ନିଜ ଜଟାରୁ ଗଙ୍ଗାଜଳ ତାଙ୍କ ଉପରେ ଢାଳିଲେ । ତାହା ପଞ୍ଚଧାରରେ ନିର୍ଗତ ହେଲା । ସେହି ପଞ୍ଚଧାର ତ୍ରିସ୍ରୋତ, ଜଟୋଦକ, ସ୍ୱର୍ଣ୍ଣୋଦକ, ଜମ୍ବୁ ଓ ବୃଷଧ୍ୱଜ ନାମରେ ପାଞ୍ଚ ନଦୀ ଭାବରେ ପ୍ରବାହିତ ହେଲେ ।

ଶିଳାଦ ଓ ଶିବ ଦୁହେଁ ମିଳି ନନ୍ଦୀଶ୍ୱରଙ୍କୁ ମରୁତଦେବଙ୍କ କନ୍ୟା ସୁକୀର୍ତ୍ତି ସହିତ ବିବାହ ଦେଲେ ।

ସୃଷ୍ଟିର ଆଦିକାଳରେ ତ୍ରିମୂର୍ତ୍ତି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏକଦା କଥୋପକଥନ

କରୁଥିବା ସମୟରେ ବ୍ରହ୍ମା କହିଲେ, "ମୁଁ ହିଁ ପରଂବ୍ରହ୍ମ, ଆପଣ ଦୁଇଜଣ ମୋତେ ପୂଜା କରନ୍ତୁ ।"

ଏଥିରେ ଶିବ ରାଗିଯାଇ ହୁଙ୍କାର କଲେ । ସେହି ହୁଙ୍କାରରୁ ପ୍ରକଟ ହେଲା ଏକ ଭୟାନକ ମୂର୍ତ୍ତି । ଶିବ ତାକୁ ଆଜ୍ଞା ଦେଲେ, "ତୁ ଏ ବ୍ରହ୍ମାକୁ ଦଣ୍ଡ ଦେ ।" ସେ ବ୍ରହ୍ମାଙ୍କର ପଞ୍ଚଶିରରୁ ଗୋଟିଏ କାଟି ଫିଙ୍ଗି ଦେଲା । ତାହା ଯେଉଁଠି କଟା ହେଲା ସେ ସ୍ଥାନ ହେଲା କାଶୀ ଓ ଯେଉଁଠି ଫିଙ୍ଗି ହୁଆଗଲା ତାହା ହେଲା ବ୍ରହ୍ମକପାଳ ।

ଏ କାହାଣୀର ତାତ୍ପର୍ଯ୍ୟ ହେଲା, ବ୍ରହ୍ମା ସୃଷ୍ଟିର ପ୍ରତୀକ । ସୃଷ୍ଟି ହେବା ମାତ୍ରେ ପଶୁପକ୍ଷୀ, ମଣିଷ, ସମସ୍ତଙ୍କ ଚେତନାକୁ ଅହଂ ଭାବ ଗ୍ରାସ କରେ । ଶିବ ବ୍ରହ୍ମାଙ୍କ ଗୋଟିଏ ଶିର ଉଡ଼ାଇ ଦେବାର ଅର୍ଥ ସେହି ଅହଂ ଉପରେ ଆଘାତ ଦେବା । ଅଧିକାଂଶ ପୌରାଣିକ କାହାଣୀର ଏହିପରି ଗଭୀର ଅର୍ଥ ଥାଏ ।

ତା'ପରେ ଶିବ କାଶୀରେ ରହିବା ବେଳେ ସେଇ ଭୟାନକ ମୂର୍ତ୍ତିକୁ ନିଜର ଅଙ୍ଗରକ୍ଷୀ କରି ରଖିଲେ ଓ ତା'ର ନାମ ଦେଲେ କାଳଭୈରବ । କାଳଭୈରବ ଶିବଙ୍କ ଆଜ୍ଞାରେ ନାନା ତୀର୍ଥ ବୁଲି ଶେଷରେ କାଶୀରେ ଶିବଙ୍କ ସହିତ ବାସ କରିବାରୁ ତା'ର ବ୍ରହ୍ମହତ୍ୟା ଦୋଷ ଛାଡ଼ିଲା ।



ପ୍ରାଚୀନ କାଳରେ ବ୍ୟାଘ୍ରପାଦ ନାମରେ ଜଣେ ଋଷି ଥା'ନ୍ତି । ସେ ଓ ତାଙ୍କ ସ୍ତ୍ରୀ ଶିବପୂଜା କରି ପୁଅଟିଏ ପାଇଲେ, ପୁଅର ନାମ ସେ ରଖିଲେ ଉପମନ୍ୟୁ । ଉପମନ୍ୟୁ ଜନ୍ମଠାରୁ ପାଞ୍ଚବର୍ଷ ହେବା ପର୍ଯ୍ୟନ୍ତ ମା' ସହିତ ଅଜାଘରେ ରହୁଥାଏ । ପରେ ନିଜ ଘରକୁ ଆସି ମା'କୁ ଦୁଧ ପିଇବାକୁ ମାଗିବାରୁ ମା' କହିଲେ, "ତୋର ଅଜା ମାମୁଁ ସିନା ଧନୀ, ଆମେ କୁଆଡ଼ୁ ଜଙ୍ଗଲରେ ଦୁଧ ପାଇବୁ ?" ସେ କିନ୍ତୁ ଦୁଧ ପିଇବାକୁ ଜିଦ୍ କଲା । ଶେଷରେ ଏକଥା ପିତା ବ୍ୟାଘ୍ରପାଦ ଜାଣି ବହୁତ ଦୁଃଖିତ ହୋଇ ତାକୁ ଶିବ ପଞ୍ଚାକ୍ଷରୀ ଜପିବାକୁ କହିଲେ । ବାଳକ

ଉପମନ୍ୟୁ ଗଭୀର ବନ ଭିତରେ ପ୍ରବେଶ କରି ଏକ ନିର୍ଜନ ସ୍ଥାନରେ ଶିବ ପଞ୍ଚାକ୍ଷରୀ ଜପିଲେ । ଶିବ ନାନା ପ୍ରକାର ରୂପ ଧରି ତାଙ୍କୁ ସେଥିରୁ କ୍ଷାନ୍ତ ହେବାକୁ ପ୍ରବର୍ତ୍ତାଇଲେ ଓ ପଶୁମାନଙ୍କର ରୂପ ଧରି ଭୟ ଦେଖାଇଲେ । କିନ୍ତୁ ସେ ଅବିଚଳିତ ଭାବରେ ଶିବ ପଞ୍ଚାକ୍ଷରୀ ଜପି ଚାଲିଲେ । ଶିବ ପାର୍ବତୀ ବାଳକ ଉପମନ୍ୟୁଙ୍କର ତପସ୍ୟାରେ ମୁଗ୍ଧ ହୋଇ ତାଙ୍କୁ ବର ଦେଲେ । ସେଥିରେ ସେ ସମସ୍ତ ଐଶ୍ୱର୍ଯ୍ୟ ଲାଭ କରିବା ସଙ୍ଗେ ସଙ୍ଗେ ଶିବ କୃପା ମଧ୍ୟ ଲାଭ କଲେ । ଶିବଙ୍କ ପ୍ରତି ତାଙ୍କ ଭକ୍ତି ରହିଲା ଅଟଳ ।

ଆଦିକାଳରେ ଦେବଦାନବଙ୍କର ଯୁଦ୍ଧ ହେବା ବେଳେ ଦେବତାମାନେ ଅଧିକ ସଂଖ୍ୟାରେ ମରୁଥା'ନ୍ତି । ଥରେ ଦେବତାମାନେ ବିଷ୍ଣୁଙ୍କୁ କହିଲେ, "ଭଗବାନ୍, ଏହାର କିଛି ପ୍ରତିକାର କରନ୍ତୁ । ଆମର ଯେପରି ମୃତ୍ୟୁ ନ ହୁଏ ।"

ଶ୍ରୀବିଷ୍ଣୁ କହିଲେ, "ଦେବଗଣ, କେବଳ ଅମୃତପାନ କଲେ ତୁମେମାନେ ଅମର ହେବ । ଏବେ ତମେମାନେ ଯାଇ ପୃଥିବୀର ସମସ୍ତ ଔଷଧିକୁ କ୍ଷୀର ସାଗରରେ ପକାଇ ଦିଅ । ତା'ପରେ ମନ୍ଦରାଚଳକୁ ଦଣ୍ଡ କରି ସାଗରମନ୍ଥନ କର । ସେଥିରୁ ଅମୃତ ବାହାରିବ ଓ ତୁମେମାନେ ତାହା ପାନ କରି ଅମର ହେବ ।"

ଦେବଗଣ ଶ୍ରୀବିଷ୍ଣୁଙ୍କ କଥା ଅନୁସାରେ ମନ୍ଦରାଚଳକୁ ଉପାଡିବାକୁ ଚେଷ୍ଟା କଲେ । ତାହା ଟିକିଏ ବି ହଲିଲା ନାହିଁ । ସେମାନେ ପୁଣି ବିଫଳ ମନୋରଥ ହୋଇ ଶ୍ରୀବିଷ୍ଣୁଙ୍କ ପାଖରେ ପହଞ୍ଚି କହିଲେ, "ଆମେ ଅନେକ ଚେଷ୍ଟା କଲୁ କିନ୍ତୁ କିଛି ଫଳ ହେଲା ନାହିଁ । ଏବେ ଆପଣ କୁହନ୍ତୁ କ'ଣ କରିବାକୁ ହେବ ।"

"ଅପେକ୍ଷା କର, ଧୈର୍ଯ୍ୟ ରଖ । ସବୁ ଠିକ୍ ସମୟରେ ହେବ ।" ଶ୍ରୀବିଷ୍ଣୁ କହିଲେ ।






# ଚୋରର ଭାବାନ୍ତର

ଥରେ ଦୁଇଜଣ ବ୍ୟବସାୟୀ ବନ୍ଧୁ ବାଗଦାଦ୍ ସହରରେ ପହଞ୍ଚିଲେ । ସେମାନେ ଗୋଟିଏ ପାନ୍ଥନିବାସରେ ଜିନିଷପତ୍ର ରଖି, ସ୍ନାନାଦି ଶେଷ କରି ବଜାରକୁ ଗଲେ । ସୁଯୋଗ ଦେଖି ଗୋଟିଏ ଚୋର ଘରେ ପଶି ସେମାନଙ୍କର ଶୁଖୁଥିବା ଲୁଗା ସବୁ ନେଇ ଚାଲିଗଲା ।

ଲୁଗାସବୁ ନେଇ ସେ ହାଟକୁ ବିକିବାକୁ ଗଲା । ହେଲେ ପୁରୁଣା ଲୁଗା ବୋଲି କେହି କିଣିଲେ ନାହିଁ । ତଥାପି ବିକିବା ଆଶାରେ ସେଠାରେ ସେ ବସି ରହିଥାଏ । ଏଇ ସମୟରେ ମାଙ୍କଡ଼ଟିଏ ତା' ସାମନାରେ ନାନା ଭଙ୍ଗୀ କରି ନାଚିବାକୁ ଲାଗିଲା । ସେ ଖୁସି ହୋଇ ଦେଖୁଥାଏ । ଏଇ ସୁଯୋଗରେ ମାଙ୍କଡ଼ର ମାଲିକ ତା'ର ଲୁଗା ଗଣ୍ଠିଲିଟି ଧରି ପଳେଇଲା । ସେଇଟା ଥିଲା ତାର ଚୋରି କରିବାର କୌଶଳ ।

ପାନ୍ଥ ନିବାସରୁ ଚୋରି କରିଥିବା ଚୋର ତାହାଠାରୁ ବଡ଼ ଚୋର ହାତରେ ପଡ଼ି ସବୁ ହରାଇଲା ସିନା, କିନ୍ତୁ ସେ କଥା ସେ ହାଟର ଜଗୁଆଳମାନଙ୍କୁ କିଛି କହିପାରିଲା ନାହିଁ । କହିଲେ ହୁଏତ ସେମାନେ ଜେରା କରିବେ ଏବଂ ଲୁଗାତକ ସେ କେଉଁଠାରୁ ପାଇଲା, ତା'ର କୌଣସି କୈଫିୟତ୍ ଦେଇ ପାରିବ ନାହିଁ । ଏହି ଆଶଙ୍କାରେ ସେ ଦୁଃଖରେ ମନ ମାରି ଚୁପ୍ ରହିଲା ।

ପରଦିନ ପ୍ରଥମ ଚୋର ବଜାରରେ ବୁଲି ବୁଲି ଦେଖିଲା ଜଣେ ବ୍ୟକ୍ତି ଲୁଗାର ପେଡ଼ିଟିଏ ଧରି ବସିଛି ଓ ଚିତ୍କାର କରି କହୁଛି, "ଭାଇମାନେ, ମୋ ଦୋକାନ ଭଙ୍ଗିଗଲା, ବଳକା ଲୁଗା ସବୁ ଶସ୍ତାରେ ନେଇ ଯାଆନ୍ତୁ । ବହୁତ ଶସ୍ତା ।"

ପୂର୍ବଦିନ ଚୋରି ଲୁଗାତକ ହରାଇଥିବା ଯୋଗୁଁ ପ୍ରଥମ ଚୋର ବଡ଼ ମନସ୍ତାପରେ

ଥାଏ । ଶସ୍ତାରେ କିଛି କିଣି ଅଧିକ ଦାମରେ ବିକି ଯଥା ସମ୍ଭବ ଲାଭ କରିବା ଆଶାରେ ସେ ଲୁଗା ବିକାଳି ପାଖକୁ ଯାଇ ଦେଖିଲା ସେ ବାସ୍ତବିକ ବହୁତ ଶସ୍ତାରେ ଜିନିଷତକ ବିକି ଦେଇ ଚାଲିଯିବାକୁ ତତ୍ପର ହେଉଛି ।

ଏତେ ଶସ୍ତା ଦେଖି ପ୍ରଥମ ଚୋର କୌଣସି ବିଚାର ନ କରି କିଣି ନେଲା । ଲୁଗା ବିକିବା ମାନେ ଦ୍ୱିତୀୟ ଚୋର ସେଠାରୁ ପଳାଇ ଗଲା । ପ୍ରଥମ ଚୋର ମନ ଖୁସିରେ ଲୁଗା-ଗଣ୍ଠିଲି ଫିଟାଇ ଦେଖେ ତ ପୂର୍ବୋକ୍ତ ଲୁଗା ଗୁଡ଼ିକହିଁ ସେଥିରେ ଅଛି । ବିଚରା କରିବ କ'ଣ ? କହିବ ବା କାହାକୁ ? ରାଗରେ ଖାଲି ଛଟପଟ ହେଲା । ମନ ଥଣ୍ଡା ହୋଇଯିବା ପରେ ଭାବିଲା, "ଆହା କେତେ କଷ୍ଟ କରି ଲୁଚି ଲୁଚି ମୁଁ ଏତେକ ଲୁଗା ଚୋରି କରିଥିଲି । ଚୋରି କଲାବେଳେ ମନରେ କେତେ ଭୟ, ଉଦ୍‌ବେଗ । ସବୁ ସିନା ଧୂଳିରେ ମିଶିଲା ! ସେଇ ଲୁଗାକୁ ପୁଣି ଟଙ୍କା ଦେଇ କିଣିଲି । ପ୍ରତ୍ୟେକ ମଣିଷର କର୍ମଫଳ ଥାଏ । ବିଚରା ବିଦେଶୀ ଭଦ୍ରଲୋକଙ୍କୁ ଠକି ଏଇ ଫଳ ମୋତେ ମିଳିଲା । ଛିଃ, ଏଇ ଲୁଗା ନେଇ ମୁଁ ବଡ଼ ହଇରାଣରେ ପଡ଼ିଲିଣି । ଜାଣିନି ଆହୁରି କେତେ କଷ୍ଟ ଭୋଗ କରିବାକୁ ଅଛି । ବରଂ ମୁଁ ଚୁପ୍‌ଚାପ ଯାଇ ସେମାନଙ୍କୁ ତାଙ୍କ ଲୁଗାଗୁଡ଼ିକ ଦେଇଦିଏ । ମୋ ପାପର ପ୍ରାୟଶ୍ଚିତ୍ତ ହେବ ।"

ତା'ପରେ ସେ ଚୋର ଲୁଗାଗୁଡ଼ିକୁ ଗଣ୍ଠିଲି କରି ବାନ୍ଧି ସେଇଠାରେ ଯାଇ ପହଞ୍ଚିଲା । ଭାଗ୍ୟକୁ ସେମାନେ ପିଣ୍ଡାରେ ସବୁ ଶୋଇ ଯାଇଛନ୍ତି । ଅତି ସନ୍ତର୍ପଣରେ ଚୋର ସେଠାକୁ ଯାଇ ଲୁଗା ଗଣ୍ଠିଲିଟି ସେମାନଙ୍କ ପାଖରେ ରଖିଦେଇ ଶୀଘ୍ର ଶୀଘ୍ର ସେ ସ୍ଥାନ ଛାଡ଼ି ପଳାଇଗଲା ଓ ଶାନ୍ତିର ନିଶ୍ୱାସ ମାରିଲା ।

ଗୁରୁବନ୍ଧୁ ଯେତେବେଳେ ସେମାନଙ୍କ ଲୁଗାତକ ଫେରି ପାଇଲେ, ସେମାନଙ୍କ ବିସ୍ମୟର ସୀମା ରହିଲା ନାହିଁ ।



# ଭଗବାନଙ୍କର ଧ୍ୟାନ

ଶ୍ରୀପୁରରେ କୃଷ୍ଣଶାସ୍ତ୍ରୀ ନାମକ ଜଣେ ବିଦ୍ୱାନ ପଣ୍ଡିତ ଓ ବକ୍ତା ରହୁଥାନ୍ତି । ପ୍ରତିବର୍ଷ ନବରାତ୍ର ଉତ୍ସବରେ ମନ୍ଦିର ପ୍ରାଙ୍ଗଣରେ ଏକ ବଡ଼ ଧାର୍ମିକ ସଭା ହୁଏ । ସେଥିରେ କୃଷ୍ଣଶାସ୍ତ୍ରୀ ପୌରହିତ୍ୟ କରନ୍ତି; ଭଗବାନଙ୍କୁ ଧ୍ୟାନ କରିବା ବିଷୟରେ ଓ ନାନା ଧାର୍ମିକ ଉପଦେଶ ଦେଇ ସେ ବକ୍ତୃତାମାନ ଦିଅନ୍ତି । ଲୋକେ ତାଙ୍କ ଭାଷଣକୁ ଖୁବ୍ ପସନ୍ଦ କରନ୍ତି ।

ତାଙ୍କ ପୁତ୍ର ହରିଦାସ ମଧ୍ୟ ପିତାଙ୍କ ପରି ବିଦ୍ୟା-ପ୍ରେମୀ । ସେ ମଧ୍ୟ ପିତାଙ୍କଠାରୁ ବକ୍ତୃତା ଦେବାର କଳା କିଛିଟା ଶିଖିଥା'ନ୍ତି ।

ଥରେ ନବରାତ୍ରି ଉତ୍ସବରେ କୃଷ୍ଣଶାସ୍ତ୍ରୀ ଦୁଇଦିନ ଭାଷଣ ଦେବା ପରେ ତୃତୀୟ ଦିନ ହଠାତ୍ ଅସୁସ୍ଥ ହୋଇ ପଡ଼ିବାରୁ ପୁତ୍ର ଉପରେ ଧର୍ମ ସଭାର ଭାର ଅର୍ପଣ କଲେ । କିନ୍ତୁ ଶ୍ରୀପୁରର ଲୋକେ କୃଷ୍ଣଶାସ୍ତ୍ରୀଙ୍କ ସ୍ଥାନରେ ହରିଦାସଙ୍କୁ ଦେଖି ପଳାଇ ଯିବାକୁ ଉଠି ଠିଆ ହେଲେ । ହରିଦାସ କିନ୍ତୁ ଧୈର୍ଯ୍ୟ ଧରି ଠିଆ ହୋଇ କହିଲେ, "ଭକ୍ତଜନେ, ଶରୀରର ଅସୁସ୍ଥତା ଯୋଗୁ କୃଷ୍ଣଶାସ୍ତ୍ରୀ ଆଜି ସଭାକୁ ଆସି ପାରିବେ ନାହିଁ । ତେବେ ମୁଁ ନିବେଦନ କରୁଛି ଯେଉଁମାନେ କୃଷ୍ଣଶାସ୍ତ୍ରୀଙ୍କ ପାଇଁ ଏଠାକୁ ଆସିଛନ୍ତି ସେମାନେ ଖୁସିରେ ଚାଲିଯାନ୍ତୁ । କିନ୍ତୁ ଯିଏ ଏଠାକୁ ଭଗବାନ୍‌ଙ୍କ ପାଇଁ ଆସିଛନ୍ତି ସେମାନେ ରହନ୍ତୁ ।" ସମସ୍ତେ ପୁଣି ବସି ପଡ଼ିଲେ । ପିତା କୃଷ୍ଣଶାସ୍ତ୍ରୀଙ୍କ ଯୋଗ୍ୟପୁତ୍ର ହରିଦାସଙ୍କ ଧର୍ମ ଉପଦେଶ ଓ ଭାଷଣ ଶୁଣି ସମସ୍ତେ ମୁଗ୍ଧ ହେଲେ ।





# ‘ପାଷଣ୍ଡ’ର ପରାକ୍ରମ

ସୁପର୍ଣ୍ଣ ରାଜ୍ୟର ରାଜା ଦେବଲ ସିଂହଙ୍କର ଏକମାତ୍ର କନ୍ୟା ମୋହନା ଥିଲେ ଅନୁପମ ସୁନ୍ଦରୀ। ନିଜର ସୌନ୍ଦର୍ଯ୍ୟ ପାଇଁ ସେ ଗର୍ବ ମଧ୍ୟ କରୁଥିଲେ। ସେଥିପାଇଁ ତାଙ୍କ ସକାଶେ ଭଲ ବରଟିଏ ଖୋଜିବା ରାଜାଙ୍କ ପାଇଁ ଥିଲା ଏକ ସମସ୍ୟା। ଯେତେ ରାଜପୁତ୍ର ମୋହନାଙ୍କୁ ଦେଖାଇ ଦିଆଯିବ; ସେ ସବୁଥିରେ କିଛି ନା କିଛି ଦୋଷ ଦେଖାଇ ପ୍ରତ୍ୟାଖ୍ୟାନ କରି ଦେଉଥିଲେ।

ଦିନେ ମୋହନା ଉଦ୍ୟାନରେ ବୁଲୁଥିବା ବେଳେ ଏକ ଡାକୁଦଳ ହଠାତ୍ କୁଆଡୁ ଆସି ପହଞ୍ଚିଲେ ଓ ଡାକୁ ସର୍ଦ୍ଦାର ତାଙ୍କୁ ଘୋଡ଼ାରେ ବସାଇ ହରଣଚାଳ କରି ନେଇ ପଳାଇଲା। ଜଙ୍ଗଲ ମଧ୍ୟରେ ଏକ ଗୁମ୍ଫା ଥିଲା ଡାକୁମାନଙ୍କର ଆଡ୍ଡାସ୍ଥଳୀ। ସେହି ଗୁମ୍ଫାରେ ଡାକୁ ସର୍ଦ୍ଦାର ନିଜ ପରିବାର ସହ ରହୁଥାଏ। ସେ ରାଜକୁମାରୀଙ୍କୁ ସେହି ଗୁମ୍ଫା ଭିତରକୁ ନେଇ ଯାଇ ନିଜର ପରିଚୟ ଦେଇ କହିଲା, "ମୋ ନାମ ହେଉଛି ପାଷଣ୍ଡ ଆଉ ଦେଖ ଏଇ ମୋର ସ୍ତ୍ରୀ। ତା' ନାମ ହେଉଛି ପାତକୀ। ଆଉ ଏଇ ଛୋଟ ଝିଅଟା ମୋର ଝିଅ, ନାମ କାଦମ୍ବରୀ। ଏଠାରେ ଯେଉଁ ଦୁଇଜଣ ବୟସ୍କ ବ୍ୟକ୍ତି ଦେଖୁଛ ସେମାନେ ମୋ ସ୍ତ୍ରୀର ସେବକ। ମୋର ଅନୁଚରମାନେ ଏଇ ଗୁମ୍ଫାର ନିକଟକୁ କେବେ ମଧ୍ୟ ଆସିବାକୁ ସାହସ କରନ୍ତି ନାହିଁ। ତୁମେ ନିର୍ଶ୍ଚିନ୍ତରେ ମୋ ସ୍ତ୍ରୀ ସହ ରୁହ।"

"କିନ୍ତୁ ତମେ ମୋତେ ଏଠାକୁ କାହିଁକି ନେଇ ଆସିଲ ?" ମୋହନା ରାଗି କରି ପଚାରିଲେ।

ଡାକୁ ପାଷଣ୍ଡ କିନ୍ତୁ ଶାନ୍ତ ସ୍ୱରରେ କହିଲା, "ମୋ ପତ୍ନୀ ପାଇଁ ମୁଁ ସବୁ ସୁବିଧା କରି-ଦେଲେ ମଧ୍ୟ ସେ ପାହାଡ଼ିଆ ଗୁମ୍ଫାରେ



ରହିବାକୁ ପସନ୍ଦ କରୁନାହିଁ । କାରଣ ତା'ର ମନୋରଞ୍ଜନ କରିବା ପାଇଁ କେହି ସାଙ୍ଗ ସାଥୀ ନାହିଁ । ଦିନେ ସେ କଥାରେ କଥାରେ କହିଲା ତୁମକୁ ଆଣି ଦେବାକୁ । ତେଣୁ ମୁଁ ଆଣିଦେଲି । ଏବେ ତା'ର ସେବା କରି ଏଇଠି ଥାଅ ।"

ପାଷଣ୍ଡର କଥା ଶୁଣି ମୋହନା ଆହୁରି ରାଗି ଯାଇ ତା' ଆଡ଼କୁ କ୍ରୋଧପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ । ପାଷଣ୍ଡ ଥିଲା ବେଶ୍ ଲମ୍ବା ଓ ସ୍ୱାସ୍ଥ୍ୟବାନ୍ । ଦେହର ରଙ୍ଗ ସୁନା ପରି । ଦେଖିବାକୁ ରାଜକୁମାର ପରି । ଅଥଚ କାହିଁକି ଏପରି ଡକାୟତି କରି ଜୀବିକାର୍ଜନ କରୁଛି ? ମୋହନା ଭାବିବାକୁ ଲାଗିଲେ । ପୁଣି ଅନ୍ୟ ଦିଗରେ ତା'ର ସ୍ତ୍ରୀ ପାତକୀ କଳା, ମୋଟା, ବୟସ୍କା ଓ ଅତ୍ୟନ୍ତ ଅସଭ୍ୟ ଜାତିର ସ୍ତ୍ରୀ ଲୋକ ପରି ମନେ ହେଉଛି । ଦେଖିବାକୁ ମଧ୍ୟ ବିକୃତ । ତା' ଝିଅ ପୁରା ମା' ପରି ।

ପାଷଣ୍ଡ ଓ ମୋହନା କଥାବାର୍ତ୍ତା କଲାବେଳେ ଜଣେ ସେବକ କହିଲା, "ଏଇ ସୁନ୍ଦରୀ ରାଜକନ୍ୟାଙ୍କୁ ସର୍ଦ୍ଦାର ନେଇ ଆସିଛନ୍ତି ନିଶ୍ଚୟ ବିବାହ କରିବେ ।"

ଜନ୍ତୁ ସେବକର କଥା ଶୁଣି ପାଷଣ୍ଡ ରାଗି ଯାଇ କହିଲା, "ମୂର୍ଖ, ଜାଣିନୁ ଏକପତ୍ନୀବ୍ରତ ମୋର ଆଦର୍ଶ ! ଆଉ ଥରେ ଏପରି କହିବୁ ତ ତତେ ମାରି ପକାଇବି ।"

ରାଜକୁମାରୀ ନିରୁପାୟ ହୋଇ ସେହି ଗୁମ୍ଫାରେହିଁ ରହିଲେ । ଆରମ୍ଭରେ ସେ ପାତକୀର ସେବା କରିବାକୁ ଅନିଚ୍ଛା ପ୍ରକାଶ କଲେ । କିନ୍ତୁ ଜଣେ ସେବକ କହିଲା ସେଥିରେ ସର୍ଦ୍ଦାର ବେଶି ଦଣ୍ଡ ଦେଇପାରେ ।

ବୃଦ୍ଧ ସେବକ ଦୀପସିଂହ ମୋହନାଙ୍କର ଉପସ୍ଥିତ ଦୁର୍ଦ୍ଦଶା ଦେଖି ଦିନେ ତାଙ୍କୁ ସାନ୍ତ୍ୱନା ଦେଇ କହିଲା, "ତମର ତ ଅପ୍ସରା ପରି ସୌନ୍ଦର୍ଯ୍ୟ ଅଛି । ତୁମର ଏପରି ଦଶା କାହିଁକି ହେଲା ? ଗୋଟିଏ ମାତ୍ର ଉପାୟ ଅଛି । ଯଦି ତମେ ନିଜର ରୂପ ଗୁଣରେ ସର୍ଦ୍ଦାରକୁ ମୁଗ୍ଧ କରି ତାଙ୍କୁ ବିବାହ କରିପାରିବ ତେବେ ଯାଇ ଏହି ଦାସୀ ଜୀବନରୁ ମୁକ୍ତ ପାଇବ ।"

"ଛିଃ, ତୁମ ମୁହଁ ବନ୍ଦ କର । କ'ଣ ତମେ ଜାଣିନା କି ମୁଁ ସୁପର୍ଣ୍ଣ ରାଜ୍ୟର ରାଜ-



କୁମାରୀ ? ମୁଁ ଜଣେ ଡାକୁକୁ ବିବାହ କରିବି? ମୂର୍ଖଙ୍କ ପରି କ'ଣ କଥା କହୁଛ ?" ରାଗିଯାଇ କହିଲେ ମୋହନା ।

"ଏକଥା ସତ ଯେ ଆମ ସର୍ଦ୍ଦାର ଜଣେ ଡାକୁ । କିନ୍ତୁ ଏ ସଂସାରରେ କୌଣସି ରାଜ-କୁମାର ରୂପ ଓ ଗୁଣରେ ତାଙ୍କର ସମକକ୍ଷ ହେବେ ନାହିଁ । ଛାଡ଼, ବିବାହ ନକର, କିନ୍ତୁ ଏଠାରୁ ମୁକ୍ତି ପାଇବାର ଏକମାତ୍ର ଉପାୟ ଯଦି ସେ ଦୟା କରନ୍ତି । ନଚେତ୍ ଗୁମ୍ଫା ଭିତରେ ବନ୍ଦିନୀ ହୋଇ ରହିଲେ ସାଧାରଣ ଝିଅ ଓ ରାଜକୁମାରୀ ମଧ୍ୟରେ ତଫାତ୍ କ'ଣ ଅଛି ?" ମୋହନା କ୍ରମେ ବୁଝିଲେ ବୁଢ଼ି ଯାହା କହୁଛି ତାହା ସତ ।

ଦିନେ ସେ ନୀଳ ରଙ୍ଗରେ ସାଜସଜ୍ଜା ହୋଇ ନୀଳ୍ ଶାଢ଼ୀ ପିନ୍ଧି ପାଷଣ୍ଡ ଆଗରେ ଥରେ ଦୁଇଥର ଯିବା ଆସିବା କଲେ ତାଙ୍କ ମନ ଆକର୍ଷଣ କରିବାକୁ । ସେତେବେଳେ ପାଷଣ୍ଡ କୌଣସି ବିଷୟରେ ଗଭୀର ଭାବରେ ଚିନ୍ତାମଗ୍ନ ଥାଏ । ତେଣୁ ମୋହନାଙ୍କୁ ଦେଖି ପାରି ନଥାଏ । କିଛି ସମୟ ପରେ ପାଷଣ୍ଡ ମୋହନାଙ୍କୁ ପାଖକୁ ଡାକି କହିଲା, "ତମେ ତ ଆଜି ଭାରି ସୁନ୍ଦର ଦେଖାଯାଉଛ । କିନ୍ତୁ ନାଲି ଶାଢ଼ୀରେ ତୁମେ ଆହୁରି ସୁନ୍ଦର ଲାଗୁଥିଲ ।"

"ତମେ କିପରି ଜାଣିଲ ?" ମୋହନା ପଚାରିଲେ ।

"ମୋ ସ୍ତ୍ରୀ ମୋତେ କହିଥିଲା । ସୌନ୍ଦର୍ଯ୍ୟ ବିଷୟରେ ତା'ର ଜ୍ଞାନ ଖୁବ୍ ଗଭୀର ।" ପାଷଣ୍ଡ କହିଲା ।

ପାତକୀର ନାମ ପଡ଼ିବା ମାତ୍ରେ ମୋହନା ମନରେ ରାଗ ଆସିଲା । କିନ୍ତୁ ସେ ତାହା ଦବାଇ ରଖିଲେ । ଆଉ ଦିନେ ସେ ନୀଳ ରଙ୍ଗର ଶାଢ଼ୀ ପିନ୍ଧି ବୁଲି ବୁଲି ଗୀତ ଗାଉଥା'ନ୍ତି । ସେ ଗୀତ ଗୁଡ଼ିକ ଥିଲା ଶ୍ରୀକୃଷ୍ଣଙ୍କର ବାଲ-ଲୀଳା ବିଷୟରେ । ତାଙ୍କର କଣ୍ଠସ୍ୱର ଥିଲା ଅତ୍ୟନ୍ତ ମଧୁର ।

"ହେଇ ଶୁଣ । ତମେ ଶ୍ରୀକୃଷ୍ଣଙ୍କ ଲୀଳା-ସଙ୍ଗୀତ ଏଠାରେ ଗାଇବ ନାହିଁ । ଶିବଙ୍କ ସ୍ତୁତି କରି ଗୀତ ବୋଲ । ତମେ କ'ଣ ଜାଣନାହିଁ କି ପାତକୀ ଶିବଙ୍କ ଭକ୍ତ ?" ପାଷଣ୍ଡ କହିଲା ।

ହଠାତ୍ ମୋହନାଙ୍କ ମୁହଁ ଶୁଖିଗଲା ।

ଆଉଦିନେ ମୋହନା ଗଛ ଛାଇରେ ବୁଲି ବୁଲି ନୃତ୍ୟ କରୁଥିଲେ । ପାଷଣ୍ଡ ଦୌଡ଼ିଯାଇ କହିଲା, "ମୋ ସ୍ତ୍ରୀ ଠାରୁ ଅନୁମତି ନେଇ ନାଚ କରୁଛ ତ ? ନ ହେଲେ ସେ ରାଗିବ ।" ତା'ପରେ ମୋହନା ଚୁପ୍ ହୋଇଗଲେ ।

କିଛିଦିନ ପରେ । ଦିନେ ମୋହନା ପାଷଣ୍ଡକୁ କହିଲେ, "ଦେଖ, ତୁମର ସେବକ କହୁଥିଲା ଯେ ତମେ ଅନ୍ୟାନ୍ୟ ଚୋର ଡାକୁଙ୍କ ପରି ନୁହଁ । କ୍ଷତ୍ରିୟ ରାଜକୁମାରଙ୍କ ଅପେକ୍ଷା ମଧ୍ୟ ତୁମର ଅଧିକ ଶୌର୍ଯ୍ୟ ଓ ପରାକ୍ରମ । ମୁଁ ଟିକିଏ ଏସବୁ ଦେଖିବାକୁ ଚାହୁଁଛି ।"

"ଓ, ତାହାହେଲେ ତ ବଣ ଭିତରକୁ ଯିବାକୁ ହେବ । ତୁମକୁ ସାଥିରେ ନେଇ ଯିବାକୁ ହେଲେ ପ୍ରଥମେ ପାତକୀଠାରୁ ଅନୁମତି ଆଣିବାକୁ ହେବ । ତମେ ବରଂ ଯାଇ ତା' ଠାରୁ ଅନୁମତି ନେଇ ଆସ ।"

ପାଷଣ୍ଡର ଏପରି କଥାବାର୍ତ୍ତା ମୋହନାଙ୍କ ପାଇଁ ନୂଆ ନଥିଲା । ତେଣୁ ସେ ରାଗିଲେ ନାହିଁ । ପାତକୀ ପାଖକୁ ଯାଇ କହିଲେ, "ମୁଁ ତୁମ ସ୍ୱାମୀଙ୍କର ପରାକ୍ରମ ଦେଖିବାକୁ ଚାହୁଁଛି । ତେଣୁ ବଣକୁ ଯିବାକୁ ହେବ । ତମେ ମନରେ ଅନ୍ୟ କିଛି ନ ଭାବି ଅନୁମତି ଦେବ କି ?"

ପାତକୀ ଅଳ୍ପ ହସି କହିଲା, "ତମେ ଆମ ପ୍ରେମର ଗଭୀରତା ବୁଝିପାରିବ ନାହିଁ । ପରସ୍ପର ଉପରେ ଆମର ଅଖଣ୍ଡ ବିଶ୍ୱାସ । କୌଣସି



ସୌନ୍ଦର୍ଯ୍ୟ ତାକୁ ଟଳାଇ ପାରିବ ନାହିଁ । ତମେ ଖୁସି ମନରେ ତାଙ୍କ ସହିତ ବଣକୁ ଯାଇପାର ।"

ମୋହନା ପାଷଣ୍ଡ ସହିତ ବଣକୁ ଗଲେ । ବଣରେ ପାଷଣ୍ଡ ତା'ର ଅନେକ ବିଦ୍ୟାର ଚମତ୍କାରିତା ପ୍ରଦର୍ଶନ କଲା । ପ ଷଣ୍ଡର ଅସ୍ତ୍ରବିଦ୍ୟା ଆଦିରେ ଅଦ୍ଭୁତ କୌଶଳ ଦେଖି ମୋହନା ଖୁବ୍ ଆଶ୍ଚର୍ଯ୍ୟ ହେଲେ । ଫେରିବା ବେଳେ ବାଟରେ ପାଷଣ୍ଡ ଫଣା ଟେକି ରହିଥିବା ଏକ ନାଗସାପକୁ ହାତରେ ଧରି ଘୁରାଇ ଘୁରାଇ ଫିଙ୍ଗି ଦେଲେ । ପୁଣି ଏକ ହରିଣ ଆଡ଼େ ତୀର ମାରି ମାରି ତା' ଚାରିପାଖରେ ଏକ ଯନ୍ତା ତିଆରି କରିଦେଲେ, କିନ୍ତୁ ହରିଣ ଦେହରେ ଗୋଟିଏ ବି ତୀର ବାଜି ନଥାଏ ।



ଏସବୁ ଦେଖି ମୋହନା କହିଲେ, "ଆଚ୍ଛା! ତମର ଏତେ ପରାକ୍ରମ? ତମେ କୌଣସି ଦେଶର ରାଜକୁମାର ହେବା ଉଚିତ୍ ଥିଲା ।"

ତମେ ତ ମୋର ଏତେ ପ୍ରଶଂସା କରୁଛ ।" କିନ୍ତୁ ମୋ ସ୍ତ୍ରୀ ପାତାଳୀ ଆଜିପର୍ଯ୍ୟନ୍ତ ଥରେ ହେଲେ ମୋର ପ୍ରଶଂସା କରିନାହିଁ । ବରଂ ମୋତେ ଥଟ୍ଟା କରି କୁହେ, 'ଯଦି ତମେ ଅର୍ଜୁନଙ୍କ ପରି ତୀର ମାରି ପାତାଳଗଙ୍ଗାଙ୍କୁ ଆଣି ପାରିବ ତେବେ ଯାଇ ତୁମର ପରାକ୍ରମ ମୁଁ ମାନିବି ।' ପାଷଣ୍ଡ କହିଲା ।

ପାଷଣ୍ଡର ଏତେ ବେଶୀ ପତ୍ନୀଗତ ପ୍ରାଣ ଦେଖି ମୋହନା ମନେ ମନେ ଦୁଃଖିତ ହେଲେ । ପରେ ସଜାଗ ହୋଇ କହିଲେ, "ମୁଁ ତ ତୁମର ସମସ୍ତ ବିଦ୍ୟା ଓ ପରାକ୍ରମ ଦେଖିଲି । ତମେ ମୋର ବିଦ୍ୟା ସବୁ ଦେଖିବ ନାହିଁ ?"

"ତୁମ ବିଦ୍ୟାର ପ୍ରଦର୍ଶନ ମୁଁ ମୋ ସ୍ତ୍ରୀ ସହିତ ଦେଖିବି । ଏକାକୀ ନୁହେଁ ।" ପାଷଣ୍ଡ କହିଲା ।

ଏକଥା ଶୁଣି ମୋହନାଙ୍କ ମୁହଁ କ୍ରୋଧ ଓ ଲଜ୍ଜାରେ ଲାଲ୍ ହୋଇଗଲା । କୌଣସି ମତେ ସେ ନିଜକୁ ସଂଯତ କରି କହିଲେ, "ମୋର ସୌନ୍ଦର୍ଯ୍ୟ ଯୋଗୁ ମୋତେ ବିବାହ କରିବା ପାଇଁ ଅନେକ ଦେଶରୁ ରାଜକୁମାର ମାନେ ପ୍ରାର୍ଥୀ ଥିଲେ । କିନ୍ତୁ ମୁଁ ସେମାନଙ୍କୁ ମୋର ଅଯୋଗ୍ୟ ବୋଲି ପ୍ରତ୍ୟାଖ୍ୟାନ କରିଛି । ସ୍ୱାମୀ ସମକ୍ଷରେ ସ୍ତ୍ରୀ ବିଷୟରେ କିଛି କହିବା ମଧ୍ୟ ଉଚିତ୍ ନୁହେଁ । ତଥାପି ମୁଁ କହୁଛି ଯେ ତୁମର ସ୍ତ୍ରୀ ତୁମର ଯୋଗ୍ୟ ନୁହେଁ, ନା ସୌନ୍ଦର୍ଯ୍ୟରେ ନା ଗୁଣରେ । ତାଙ୍କ ମଧ୍ୟରେ କୌଣସି ଭଲ ସଂସ୍କାର ନାହିଁ । ତଥାପି ମୁଁ ଆଶ୍ଚର୍ଯ୍ୟ ଯେ, ତମେ ତାଙ୍କ ପ୍ରତି ଏତେ ଆକୃଷ୍ଟ ଓ ମୋତେ ଉପେକ୍ଷା କରୁଛ ।"

ପାଷଣ୍ଡ ମୋହନାଙ୍କୁ ଚାହିଁ ଅଳ୍ପ ହସି କହିଲା, ମୁଁ ବାହ୍ୟ ସୌନ୍ଦର୍ଯ୍ୟ ଅପେକ୍ଷା ଅନ୍ତରର ସୌନ୍ଦର୍ଯ୍ୟକୁ ଅଧିକ ମୂଲ୍ୟ ଦିଏ । ସେଥିପାଇଁ ମୁଁ ମୋ ସ୍ତ୍ରୀକୁ ଏତେ ଭଲପାଏ ।"

ଗୁମ୍ଫାକୁ ଫେରି ବୃଦ୍ଧ ସେବକ ଦୀପସିଂହଙ୍କୁ ମୋହନା ସବୁକଥା କହିଲେ । ଶେଷରେ

କହିଲେ, "ଏଠାରୁ ମୁକ୍ତ ହେବା ପାଇଁ ମୋର କୌଣସି ଉପାୟ ନାହିଁ ।"

"ଏବେ ତୁମ ଆଗରେ ଗୋଟିଏ ମାତ୍ର ପନ୍ଥା ଅଛି । ତୁମେ ପାତକୀକୁ ପ୍ରସନ୍ନ କରାଅ । ସେହିଁ ତୁମକୁ ରକ୍ଷା କରିପାରିବ ।" ଦୀପସିଂହ କହିଲା ଏବଂ ତାଙ୍କୁ କିଛି ପରାମର୍ଶ ଦେଲା ।

ପରଦିନ ପାତକୀ ଯିବା ରାସ୍ତାରେ ଦୀପସିଂହ କଦଳୀ ଚୋପାଟିଏ ପକାଇ ଦେଇଥାଏ । ପାତକୀ ଚୋପାଟି ମାଡ଼ି ପଡ଼ିଯିବା ବେଳକୁ ମୋହିନୀ ତାକୁ ଧରିନେଲେ । ସେ ବହୁତ ଖୁସି ହୋଇ ଯାଇ କହିଲା, "ରାଜକୁମାରୀ, ମୁଁ ତୁମର ଆଚରଣରେ ଅତ୍ୟନ୍ତ ପ୍ରୀତ । ଏବେ ମୁଁ ତୁମକୁ ମୁକ୍ତ ଦେଉଛି । କିନ୍ତୁ ମୋର ମଧ୍ୟ ଗୋଟିଏ ସର୍ତ୍ତ ଅଛି । ତୁମେ ତୁମ ପିତାଙ୍କୁ କହି ଆମ ପାଇଁ ନଗରରେ କୌଣସି ସ୍ଥାନ ଦେବ । ନହେଲେ ଏଇ ପାହାଡ଼ରେ ଜୀବନ ବିତାଇବାକୁ ଆଉ ଭଲ ଲାଗୁନାହିଁ ।"

ମୋହିନୀ ସଙ୍ଗେ ସଙ୍ଗେ ଏକଥା ସ୍ୱୀକାର କରିନେଲେ । ପାତକୀ ପାଷଣ୍ଡକୁ ଡାକି କହିଲା, "ରାଜକୁମାରୀଙ୍କୁ ସାବଧାନରେ ନେଇ ଛାଡ଼ିବ । ସେ ତାଙ୍କ ପିତାଙ୍କୁ କହିବେ ତୁମର ପୂର୍ବ ଅପରାଧ କ୍ଷମା କରି, ଆମକୁ ପୁଣି ନଗରୀ ମଧ୍ୟରେ ରହିବାକୁ ସ୍ଥାନ ଦେବେ ।"

ପାଷଣ୍ଡ ମୋହିନୀକୁ ନିଜ ଘୋଡ଼ାରେ ବସାଇ ନେଇ ସିଧା ଯାଇଁ ରାଜଧାନୀରେ



ପହଞ୍ଚିଲେ । ମୋହିନୀଙ୍କ ଆଦେଶ ଯୋଗୁଁ ରାଜସୈନିକମାନେ ପାଷଣ୍ଡକୁ ଛାଡ଼ିଦେଲେ; ବନ୍ଦୀ କଲେ ନାହିଁ ।

ତା'ପରେ ପାଷଣ୍ଡ ରାଜାଙ୍କ ହାତରେ ମୋହିନୀଙ୍କୁ ସମର୍ପଣ କରି କହିଲା, "ମହାରାଜ ଇଏ ନିଅନ୍ତୁ ଆପଣଙ୍କ କନ୍ୟା । କୌଣସି ପ୍ରୟୋଜନ ଯୋଗୁଁ ତାଙ୍କୁ ମୁଁ ବଣରେ ରଖିବାର ଧୃଷ୍ଟତା କରିଛି । କ୍ଷମା କରିବେ । ବାକି ସବୁକଥା ସେ ନିଜେ କହିବେ ।" ମୋହିନୀ ପିତାଙ୍କୁ କହିଲେ, "ବାବା, ଏ ଯୁବକ ପରମ ପରାକ୍ରମଶାଳୀ ଓ ବୀର । ଏହାଙ୍କ ସହିତ ବିବାହ କରିବାକୁ ମୁଁ ରାଜି । କିନ୍ତୁ ସେ ବିବାହିତ !"

ରାଜା ଝିଅ ମୋହନାଙ୍କୁ କହିଲେ, "ଝିଅ, ବହୁତ ଦିନ ପରେ ଆଜି ତୁ କହୁଛୁ ବିବାହ କରିବା ପାଇଁ, ମୁଁ ଖୁବ୍ ଖୁସି । ତୁ ଚିନ୍ତା କରନା । ମୁଁ ସେସବୁ ବୁଝିବି ।"

ମହା ଜାକଜମକରେ ବିବାହ ହୋଇଗଲା । ବିବାହ ପରେ ପାଷଣ୍ଡକୁ ମୋହନା କହିଲେ, "ଏ ବିବାହ ତୁମର ଇଚ୍ଛା ବିରୁଦ୍ଧରେ ହୋଇଛି, ତମେ ଜଣେ ଡ଼ାକୁ ପୁଣି ବିବାହିତ ମଧ୍ୟ । କିନ୍ତୁ ସବୁ ସତ୍ତ୍ୱେ ତୁମକୁ ମୁଁ ସ୍ୱାମୀ ରୂପରେ ପାଇ ଖୁସି । ତମେ ମୋ ସହିତ ରହିବାକୁ ପସନ୍ଦ ନ କଲେ ଚାଲିଯାଇ ପାର । କିନ୍ତୁ ମୁଁ ସାରା ଜୀବନ ତୁମର ଅପେକ୍ଷାରେ ରହିବି । ଦିନେ ନା ଦିନେ ତୁମେ ଫେରି ଆସିବ ।"

ପାଷଣ୍ଡ ଅତ୍ୟନ୍ତ ସ୍ନେହ ସହକାରେ ମୋହନାଙ୍କୁ ତଳୁ ଉଠାଇ କହିଲା, "ଯଦି ମୁଁ ଏଠୁ ଯାଏ ତ ତୁମକୁ ସାଥୀରେ ନେଇ ଯିବି । ମୋହନା ! ତମେ ଯାହା ସବୁ ଦେଖିଲ ଏସବୁ କପଟ ନାଟକ ଓ ସବୁ ମିଥ୍ୟା । ସବୁ ରାଜକୁମାରଙ୍କୁ ତମେ ପ୍ରତ୍ୟାଖ୍ୟାନ କରୁଛ ଦେଖି ତୁମ ପିତା ମୋତେହିଁ ବାଛିଲେ ଓ ମୋ ସହିତ ପରାମର୍ଶ କରି ଏପରି ନାଟକ କରା ହେଲା ତୁମ ମନ ପରିବର୍ତ୍ତନ ପାଇଁ । ମୋର ପ୍ରକୃତ ନାମ ସୁରସେନ । ମୁଁ ମଗଧର ରାଜକୁମାର । ମୁଁ ଜାଣିଥିଲି ତୁମ ପ୍ରତି ଉପେକ୍ଷା ଭାବ ଦେଖାଇଲେହିଁ ତମେ ମୋ ପ୍ରତି ଆକର୍ଷିତ ହେବ । କୁହ, ଏବେ ମୋ ସହିତ ମୋ ରାଜ୍ୟକୁ ଯିବ ତ ?"

ମୋହନା ବିସ୍ମୟ ଓ ଆନନ୍ଦରେ ବିହ୍ୱଳ ହୋଇ ପଡ଼ିଲେ । ସେ କହିଲେ, "ଜାହାଦ୍ୱାରା ମାନମର୍ଯ୍ୟାଦା ପାଇବାହିଁ ପ୍ରକୃତ ସୌନ୍ଦର୍ଯ୍ୟ । ସଦାଶୟତା ଓ ବିନୟଶୀଳତା ହେଉଛି ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟ । ମୁଁ ତୁମ ପାଖରେ ପାହାଡ଼ ଗୁମ୍ଫାରେ ରହି ଏସବୁ ଶିଖିଛି ।"

ମୋହନାଙ୍କର ପରିବର୍ତ୍ତନରେ ସମସ୍ତେ ଖୁସି । ଶୁଭଦିନ ଦେଖି ସୁରସେନ ଓ ମୋହନା ମହା ଆଡମ୍ବର ସହକାରେ ମଗଧ ଯାତ୍ରା କଲେ ।






କୋଙ୍କଣ ରାଜ୍ୟର ସୀମାରେ ଏକ ପାହାଡ଼ ଥାଏ । ତାକୁ ଭୂତ ପାହାଡ଼ ବୋଲି କୁହାଯାଉଥାଏ । ଏହି ପାହାଡ଼ ସମ୍ପର୍କରେ ଅନେକ ଗଳ୍ପ ଗୁଜବ ଥାଏ । ତେଣୁ ନିକଟବର୍ତ୍ତୀ ଗ୍ରାମବାସୀମାନେ ଭୟରେ ପାହାଡ଼ଠାରୁ ନିଜକୁ ଦୂରରେ ରଖିଥା'ନ୍ତି । ପାର୍ଶ୍ୱବର୍ତ୍ତୀ ପ୍ରାନ୍ତରରେ ଗାଈ ଚରାଇବାକୁ ନେଲେ ଅକସ୍ମାତ୍ ଯଦି ଗାଈଟିଏ ସେ ଭୂତ ପାହାଡ଼ ଆଡ଼େ ଚାଲିଯାଏ, ତେବେ ସେ ସବୁଦିନ ପାଇଁ ଗଲା । କେହି ଗାଈକୁ ଖୋଜିବାକୁ ମଧ୍ୟ ସେ ପଟକୁ ଯାଏନାହିଁ । ଆଗରୁ କୌଣସି ଗାଈଆଳ ପିଲା ସେଠାକୁ ଯାଇ ଲେଉଟି ନାହିଁ ବୋଲି କେହି ସାହସ କରି ଯାଆନ୍ତି ନାହିଁ ।

କିନ୍ତୁ ସେହି ପାହାଡ଼ ଉପରେ ଗୁଡ଼ିଏ ଗୋରୁ ଥା'ନ୍ତି । ସେମାନେ ନିଜେ ବାହାରକୁ ଚରିବାକୁ ଆସି ପୁଣି ସେଠାକୁ ଫେରିଯା'ନ୍ତି । କିନ୍ତୁ ସେମାନଙ୍କୁ କିଏ ସେଠାରେ ରଖିଛି ସେକଥା କେହି କହିପାରନ୍ତି ନାହିଁ । ଦୂରରୁ ଦେଖାଯାଏ ସେ ପାହାଡ଼ ଉପରେ ଗୋଟାଏ ଘର ଅଛି । ମଝିରେ ମଝିରେ ସେଥିରୁ ଧୂଆଁ ମଧ୍ୟ ଉଠୁଥାଏ । କିନ୍ତୁ କିଏ ଅଛି କେହି ଜାଣନ୍ତି ନାହିଁ ।

ଶୁଣାଯାଏ ପାହାଡ଼ରେ ଥାଏ ଗୋଟିଏ ଭୂତ । ଥରେ ଥରେ ସେ ତଳେ ଚରୁଥିବା ଗୋରୁମାନଙ୍କ ମଧ୍ୟରୁ ଗୋଟାକୁ ଉଠାଇ ନିଏ । କୌଣସି ଗାଈଆଳ ଗୋରୁ ଖୋଜି ଉପରକୁ ଗଲେ ତାକୁ ସେ ମାରି ପକାଏ ।

ଥରେ ସତ୍ୟପାଳ ନାମରେ ଏକ ଯୁବକ ଗାଈଆଳ ପାହାଡ଼ ତଳ ପଡ଼ିଆରେ ଗାଈ ଚରାଉଥାଏ । ସମସ୍ତେ ତାକୁ ପାହାଡ଼ ବିଷୟରେ ଭୟାନକ କାହାଣୀମାନ ଶୁଣାଇ

ପଚିଶବର୍ଷ ତଳର 'ଚନ୍ଦାମାମ'ରୁ ଗୃହୀତ



ନ ଯିବା ପାଇଁ ସାବଧାନ କରାଇ ଦେଲେ । ସେ କିନ୍ତୁ ଥିଲା ନିର୍ଭୀକ । ତଳେ ବସି ବସି ପାହାଡ଼ ଉପରର ସବୁ କିଛି ଲକ୍ଷ୍ୟ କରି ଦେଖୁଥାଏ । ଭାବୁଥାଏ ଦିନେ ସେଠାକୁ ଯିବ ।

ସତ୍ୟପାଳ କାଳେ କୌତୂହଳବଶତଃ ସେଠାକୁ ଚାଲିଯିବ ସେଥିପାଇଁ ଅନ୍ୟ ଗାଈ-ଆଳମାନେ କହିଲେ, "ଯଦି ବି କେବେ ଭୁଲ ବଶତଃ ସେଠାକୁ ଯିବୁ, ତେବେ ସେ ଘର ଭିତରକୁ କଦାପି ଯିବୁ ନାହିଁ । କାରଣ କେହି ପ୍ରାଣ ନେଇ ସେଠାରୁ ଫେରି ନାହିଁ ।

ସତ୍ୟପାଳ ସବୁ ଶୁଣି ନୀରବ ରହିଲା । ତା' ପରଦିନ ସକାଳୁ ଉଠି ନିତ୍ୟକର୍ମ ସାରି ଗାଈମାନଙ୍କୁ ପଡ଼ିଆରେ ଛାଡିଦେଇ କେହି ନ ଜାଣିବା ଭଳି ସୁଯୋଗ ଦେଖି ଭୂତପା ଉପରକୁ ଚଢ଼ିଲା । ପାହାଡ଼ ଉପରେ ପହ ଦେଖିଲା ସେଠାରେ କୌଣସି ବିଶେଷତ୍ୱ ନାହିଁ, ଚାରିଆଡ଼ େଚୁପ୍‌ଚାପ୍ । ତା'ପରେ ସେ ଘର ଆଡ଼କୁ ଗଲା । ଘର ଭିତର ଦେଖି ମନେହେଲା କୌଣସି ମନୁଷ୍ୟ ସେଠାରେ ହୁଏତ ରହୁଛି ।

ସତ୍ୟପାଳ ଚିତ୍କାର କରି ପଚାରିଲା, "ଘରେ କେହି ଅଛ ?" କିନ୍ତୁ କୌଣସି ଉତ୍ତର ପାଇଲା ନାହିଁ ।

ଭୟ ଓ ସଂକୋଚ ତ୍ୟାଗ କରି ସେ ଘର ଭିତରେ ପ୍ରବେଶ କଲା । ଦେଖିଲା ଖାଦ୍ୟଦ୍ରବ୍ୟ ପ୍ରସ୍ତୁତ ହୋଇ ରହିଛି । ଆଉ ଗୋଟିଏ କଡ଼କୁ ଗୋଟିଏ ବଡ଼ ପଲଙ୍କ ପଡ଼ିଛି । ସେଥିରେ ଶେଯ ବିଛା ହୋଇ ରହିଛି ।

ସେ ଭାବିଲା, "ଏଠାରେ ଖାଦ୍ୟ ପାଇଁ ଓ ଶୟନ ପାଇଁ ବନ୍ଦୋବସ୍ତ ଅଛି ମାନେ ଏଠାରେ ନିଶ୍ଚୟ ମନୁଷ୍ୟ ରହୁଛି । ସେ ବୋଧେ ବାହାରକୁ ଯାଇଛି । ସେ ଆସିବା ପର୍ଯ୍ୟନ୍ତ ମୋତେ ଏଠାରେ ଅପେକ୍ଷା କରିବାକୁ ହେବ ।" ତା'ପରେ ସେ ପଲଙ୍କରେ ଆରାମ କରି ବିଶ୍ରାମ ନେଲା ।

କିଛି ସମୟ ପରେ କେହି ଦୂରରୁ ଆସୁଥିବାର ପାଦଶବ୍ଦ ଶୁଣାଗଲା । ତା'ପରେ ସତ୍ୟପାଳ ଦେଖିଲା ଏକ ଭୀମକାୟ ବ୍ୟକ୍ତି ଭିତରେ ପଶି କହିଲା, "ପଲଙ୍କ ଉପରେ ଶୋଇଥିବା ଲୋକକୁ କ'ଣ ଖାଦ୍ୟ ଦେବାକୁ ହେବ ?"

ାଳ ନ ଉତ୍ତର ଚୁପ୍ କରି ଉଠି ବସିଥାଏ ।

ପରେ ଭୂତ କହିଲା, "ଚାଲ ଖାଇବା ।"

"ଯିଏ ପରିଶ୍ରମ କରି ଫେରିଛି ତା'ର ଖାଦ୍ୟ ଦରକାର ।

ମୋର ଖାଦ୍ୟ ଦରକାର ନାହିଁ ।" ସତ୍ୟପାଳ କହିଲା ।

ଭୂତ ଚୁପ୍‌ଚାପ୍ ଉଠିଯାଇ ସବୁ ଏକେଲା ଖାଇନେଲା । ତା'ପରେ ଗୋଟାଏ କୋଦାଳ ଓ ଗୋଟାଏ କୋଡ଼ି ସତ୍ୟପାଳକୁ ଦେଇ କହିଲା, "ନେ ଏଇଟା ଧର, ଆଉ ମୋ ସାଙ୍ଗରେ ବାହାରକୁ ଚାଲ ।"

"ବାହାରୁ ତ ମୁଁ କୌଣସି କିଛି ଏଠାକୁ ଆଣିନାହିଁ । ଏଠାରୁ କାହିଁକି କୋଡିକୋଦାଳ ଧରି ବାହାରକୁ ଯିବି ?" ସତ୍ୟପାଳ କହିଲା ।

"ଆଚ୍ଛା, ମୋ ସହିତ ଆ—" କହି ଭୂତ ନିଜେ କୋଡିକୋଦାଳ ଧରି ଆଗେ ଆଗେ ଚାଲିଲା । ସତ୍ୟପାଳ ମଧ୍ୟ ତା' ପଛେ ପଛେ ଗଲା । ସେମାନେ ଯାଇ ବାହାରେ ପହଞ୍ଚିଲେ ।

ସେଠାରେ ଭୂତ ସତ୍ୟପାଳକୁ କହିଲା, "କୋଦାଳ ନେଇ ଏହି ସ୍ଥାନଟିକୁ ଟିକେ ଖୋଳ ଦେ ।"

"କାହିଁକି ? ମୁଁ ତ ଏଠାରେ କିଛି ପୋତି ନାହିଁ, ଖୋଳିବି ବା କାହିଁକି ?" ସତ୍ୟପାଳ କହିଲା ।

ତା'ପରେ ଭୂତ ତାକୁ କିଛି ନ କହି ନିଜେ ଖୋଳିବାକୁ ଆରମ୍ଭ କଲା । କିଛି ସମୟ



ପରେ ଗୋଟିଏ ପିତଳ ହାଣ୍ଡି ଗାତ ଭିତରୁ ବାହାରିଲା ।

ଭୂତ କହିଲା, "ହାଣ୍ଡିକୁ ଉପରକୁ ଆଣ ।"

"ମୁଁ ତ ଗାତରେ ତାକୁ ପୋତି ନଥିଲି, ଉପରକୁ କାହିଁକି ଆଣିବି ?" ସତ୍ୟପାଳ କହିଲା ।

ଭୂତ ହାଣ୍ଡି ନିଜେ ଉଠାଇ ଉପରେ ରଖିଲା ଓ କହିଲା, "ହାଣ୍ଡିର ଢ଼ାଙ୍କୁଣି ଖୋଲି ଦେ ।"

"ମୁଁ ତ ଢ଼ାଙ୍କୁଣି ଘୋଡ଼ାଇ ନଥିଲି ଖୋଲିବି କାହିଁକି ?" ସତ୍ୟପାଳ କହିଲା ।

ଭୂତ ହାଣ୍ଡିର ଢ଼ାଙ୍କୁଣି ଖୋଲିଦେଲା । ତା' ଭିତରେ ଥିଲା ବହୁତ ସ୍ୱର୍ଣ୍ଣମୁଦ୍ରା । ଭୂତ ତାକୁ ତଳେ ଢ଼ାଳି ଦେଇ ଦୁଇଭାଗ କରି

ପଚାରିଲା ଏହା ଭିତରୁ ତୋର କେଉଁଟା ଯଦି କହିଦେବୁ ତେବେ ତୁ ଉଦ୍ଧାର ହେବୁ ମୁଁ ମଧ୍ୟ ଉଦ୍ଧାର ହେବ । ଯଦି ଭୁଲ କଥା କହିବୁ, ତୁ ବି ମରିବୁ ମୁଁ ମଧ୍ୟ ପୁଣି ଅନ୍ୟ କାହାର ଅପେକ୍ଷାରେ ରହିବି, ଯିଏ ମୋତେ ଶାପମୁକ୍ତ କରିବ । ଆଉ ଯଦି ତୋ ଦ୍ୱାରା ମୋର ଉଦ୍ଧାର ହୁଏ ତ ଏଇ ଧନ ଭିତରୁ ଗୋଟିଏ ଅଂଶ ତୋର, ଗୋଟିଏ ଅଂଶ ଗରିବ ଲୋକଙ୍କର ଓ ତୃତୀୟ ଅଂଶ ମୁଁ ମାରିଥିବା ବ୍ୟକ୍ତିଙ୍କ ପରିବାର ଲୋକଙ୍କର । ବୁଝିଲୁ ତ ?"

ସତ୍ୟପାଳ ସବୁ ଭାଗକୁ ଏକାଠି କରି ଦେଇ କହିଲା, "ଏହାର ମାତ୍ର ଏକ ତୃତୀୟାଂଶ ମୋର ।"

"ଧନ୍ୟବାଦ । ତୁ ଲୋଭର ବଶବର୍ତ୍ତୀ ନ ହୋଇ କାମ କରିଛୁ । ତୁ ତୋର ପ୍ରାପ୍ୟ ପାଇବୁ ଓ ଅନ୍ୟ ସବୁ ମୁଁ କହିବା ଅନୁସାରେ କରିବୁ । ମୁଁ ମଧ୍ୟ ଆଜି ଶାପମୁକ୍ତ ହେଲି ।" କହିଲା ଗନ୍ଧର୍ବ । ସେ ଆଉ ଶାପଗ୍ରସ୍ତ ଭୂତ ନ ଥିଲା, ସିଏ ଥିଲା ଏକ ସୁନ୍ଦର ଗନ୍ଧର୍ବ ଯାହା ଦେହରୁ ଆଲୁଅ ବାହାରୁଥାଏ ।

"ଏବେ ମୁଁ ଗଲିଲି—ଏଠାରେ ଥିବା ଘର ଗାଈ, ଧନ ସବୁ ତୋର ।" କହି ସେ ଅଦୃଶ୍ୟ ହୋଇଗଲା ।

ସତ୍ୟପାଳ ପାହାଡ଼ରୁ ତଳକୁ ଆସିଲା । ତାକୁ ଜୀବନ୍ତ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ସେ ସବୁ ଘଟଣା ସମସ୍ତଙ୍କୁ କହି ଚମତ୍କୃତ କଲା ।

ସେହି ଦିନଠୁ ସେ ସେହି ପାହାଡ଼ ଉପରେ ଘର କରି ରହିଲା । କିଛି ଧନ ମୃତ ବ୍ୟକ୍ତିଙ୍କ ପରିବାରକୁ ବାଣ୍ଟିଲା । କିଛି ଧନ ଗରିବ-ମାନଙ୍କୁ ଦେଲା । ଅବଶିଷ୍ଟ ନିଜ ଭାଗରେ ଥିବା ଧନରେ ପାହାଡ଼ ଉପରେ ଓ ତଳେ ଗୋଶାଳା ଆଦି ନିର୍ମାଣ କଲା ଓ ସୁଖରେ ରହିଲା ।

ସେହି ଘଟଣା ପରେ ସେହି ଭୂତପାହାଡ଼ର ନାମ ବଦଳି ଗଲା । ଲୋକେ ସେହି ପାହାଡ଼ର ନାମ ରଖିଲେ "ଗନ୍ଧର୍ବ ପାହାଡ଼" ।



ପଶୁ-ପକ୍ଷୀ:

# ଉଡ଼ନ୍ତା ଗୁଣ୍ଡୁଚି

ଯେଉଁ ପଶୁପକ୍ଷୀମାନେ ପରିସ୍ଥିତିର ପରିବର୍ତ୍ତନ ଅନୁସାରେ ନିଜକୁ ବଦଳାଇ ପାରନ୍ତି ସେମାନେ ଅନେକ ଦିନ ବଞ୍ଚି ରହନ୍ତି । ଯେଉଁମାନେ ପାରନ୍ତି ନାହିଁ ସେ ଜାତି ଶୀଘ୍ର ଲୋପ ପାଇଯା'ନ୍ତି । ପଶୁପକ୍ଷୀମାନଙ୍କ ମଧ୍ୟରେ, ପରିସ୍ଥିତି ସହିତ ସାମଞ୍ଜସ୍ୟ ରକ୍ଷି ବଦଳିବା ଭଳି ସ୍ୱାଭାବିକ୍ ଶକ୍ତି ଥାଏ । ଉଡ଼ନ୍ତା ଗୁଣ୍ଡୁଚିମାନେ ଏଇ ପ୍ରକାର । ଇଉରୋପ, ଉତ୍ତର ଓ ଦକ୍ଷିଣ ଆମେରିକାରେ ଏମାନେ ପ୍ରଚୁର ସଂଖ୍ୟାରେ ଦେଖାଯା'ନ୍ତି । ପ୍ରାୟ ସଇଁତିରିଶ୍ ପ୍ରକାରର ଉଡ଼ନ୍ତା ଗୁଣ୍ଡୁଚି ଅଛନ୍ତି ।

ସେମାନେ ଉଚ୍ଚ ଗଛ ଡାଳରେ ବାସ କରନ୍ତି । ଶିକାରୀ ପକ୍ଷୀଙ୍କ ଆକ୍ରମଣରୁ ରକ୍ଷା ପାଇବାକୁ ଓ ନିମ୍ନ ଭୂମିରୁ ଛୋଟ ଛୋଟ ଫଳ ଆଦି ଖାଇବା ପାଇଁ ସେମାନେ ଉଚ୍ଚରୁ ତଳକୁ ଉଡ଼ି ଆସନ୍ତି । ତାଙ୍କର ଆଗ ଗୋଡ଼ ଓ ପଛ ଗୋଡ ମଝିରେ ପକ୍ଷ ଲଗିଥାଏ ଯାହା ତାଙ୍କୁ ଉଡ଼ିବାରେ ସାହାଯ୍ୟ କରେ ।

ଉଡ଼ିବା ଆଗରୁ ସେମାନେ ମୁହଁ ଟେକି ଏପଟ ସେପଟ ଦେଖନ୍ତି ଓ ପରେ ଉଡ଼ି ଆସନ୍ତି । ସେମାନଙ୍କର ପକ୍ଷ ବେଶି ଲମ୍ବା ନ ହେବାରୁ ସେମାନେ ଧୀରେ ଧୀରେ ଉଡ଼ନ୍ତି ଓ ତଳେ ଚାଲିଲା ବେଳେ ମଧ୍ୟ ସାଧାରଣ ଗୁଣ୍ଡୁଚିଠାରୁ କମ୍ ବେଗରେ ଚାଲନ୍ତି । ସେମାନଙ୍କର ଗତି ଘଣ୍ଟାକୁ ସାଢ଼େ ଛ କିଲୋମିଟର । ସେମାନେ ଦିନସାରା ପ୍ରାୟ ଶୋଇଥା'ନ୍ତି ଆଉ ରାତିରେ ଆହାର ଖୋଜି ବାହାରନ୍ତି । ରାତିରେ ତାଙ୍କ ଦେହର ରଙ୍ଗ ସେମାନେ ରହୁଥିବା ଗଛଡାଳର ରଙ୍ଗ ପରି ହୋଇଯାଏ ।

ଫିଲିପାଇନ୍ସ ଓ ମାଲଏସିଆରେ ଏ ପ୍ରକାର ଜନ୍ତୁ ଦେଖା ଯା'ନ୍ତି । ଏମାନେ ବିଲେଇ ପରି ବଡ଼ ଓ ଏମାନଙ୍କ ନଖ ଖୁବ୍ ଗୋଜିଆ । ଦାନ୍ତ ଛୋଟ ହେଲେ ମଧ୍ୟ ମଜବୁତ । ଅଷ୍ଟ୍ରେଲିଆରେ ଥିବା ଏଇ ଜାତିର ଗୁଣ୍ଡୁଚି ସେମାନଙ୍କ ଛୁଆଙ୍କୁ କଙ୍ଗାରୁ ପରି ପେଟ ପାଖରେ ଥିବା ଥଳୀରେ ରଖି ବୁଲନ୍ତି ।



ଦାନ୍ତକଣା ର
ମୁକାବିଲା
ସୁପର ଫାଇଟର
ହିଁ କରିପାରେ!



















**ଆଉ ଫୋରହ୍ୟାନ୍ସ ଫ୍ଲୋରାଇଡ ମଧ୍ୟ ଆପଣଙ୍କୁ ଦିଏ ସେହି ବିଖ୍ୟାତ ଫୋରହ୍ୟାନ୍ସ ର ଯତ୍ନ!**




**ଫୋରହ୍ୟାନ୍ସ ଫ୍ଲୋରାଇଡ-ମାଢ଼ିକୁ ସଂକୁଚିତ କରେ, ଦାନ୍ତକଣା ରୋଧ କରେ**

404-GM-183 OR

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଏପ୍ରିଲ ୧୯୮୬ ସଂଖ୍ୟାରେ ପ୍ରକାଶ ପାଇବ



A. V. Rangaiah



M. C. Morabad

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଫେବୃଆରି ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

ଡିସେମ୍ବର, ୮୫ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ପବନ ବହିଲେବି ତ ଲିଭିବନି ଦୀପ !

ଦ୍ୱିତୀୟ ଚିତ୍ର : ଯୁଗେ ଯୁଗେ କଳାକାନ୍ତି ଅଲିଭ ପ୍ରଦୀପ !!

ପୁରସ୍କାର ବିଜୟିନୀ : ବାଣୀମଞ୍ଜରୀ ହେମାଦେବୀ, କେନ୍ଦ୍ରାପଡ଼ା ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

## ପ୍ରଶ୍ନମାଳାର ଉତ୍ତର

୧. ଓଡ଼ିଶାର ରତ୍ନଗିରି-ଲଳିତଗିରି ଉଦୟଗିରି ଅଞ୍ଚଳରେ । ୨. ଶ୍ରୀଲଙ୍କାର କାଣ୍ଡି ସହରରେ । ୩. ବଲାଙ୍ଗିର ଜିଲ୍ଲାର ରାଣୀପୁର ଝରିଆଲ ଠାରେ । ୪. ବାଲେଶ୍ୱର ସହରର ଅଦୂରରେ ପରିସଡ଼ାଙ୍ଗା ଗ୍ରାମ । ୫. ସେ ବ୍ୟାସଙ୍କ ମହାଭାରତ ଅନୁବାଦ କରିଥିଲେ ।

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.

# ଜହ୍ନମାମୁଁ

ଆଲୋକ ଓ ଆନନ୍ଦର ମାସିକ ପତ୍ରିକା



* ଭାରତର ପ୍ରାଚୀନ କାହାଣୀମାଳ ସହିତ ନୂତନ କାହାଣୀମାଳାର ଅପୂର୍ବ ସମନ୍ୱୟ ।
* ସରଳ ଓ ସଂଯତ ଭାଷାର ପ୍ରକୃଷ୍ଟ ଉଦାହରଣ—ଜହ୍ନମାମୁଁ ।
* ହାସ୍ୟରସ ସହ ମାନବିକତା ଓ ନୀତିଶିକ୍ଷାରେ ସମୃଦ୍ଧ ପତ୍ରିକା—ଜହ୍ନମାମୁଁ ।
* ଜହ୍ନମାମୁଁ କେବଳ ଶିଶୁ ବା କିଶୋରମାନଙ୍କ ପତ୍ରିକା ନୁହେଁ, ପରିବାରର ସମସ୍ତେ ଏହା ଉପଭୋଗ କରନ୍ତି ।
* ସାଧାରଣଜ୍ଞାନର ଭଣ୍ଡାର—ଜହ୍ନମାମୁଁ ।
* ଇଂରାଜୀ ଓ ସଂସ୍କୃତ ସମେତ ତେରଗୋଟି ଭାଷାରେ ପ୍ରକାଶିତ ଏ ପତ୍ରିକା ଭାରତର ଏକତାର ପ୍ରତୀକ ।

'ଜହ୍ନମାମୁଁ' ପଢ଼ନ୍ତୁ ଓ ପଢ଼ାନ୍ତୁ ।

ବାର୍ଷିକ ଦେୟ : ଟ ୩୦-୦୦



'ଜହ୍ନମାମୁଁ'ର ଗ୍ରାହକ ହେବା ନିମନ୍ତେ ଆପଣଙ୍କ ପୁରା ଠିକଣା ସହ ମନିଅର୍ଡର ତଳ ଠିକଣାକୁ ପଠାନ୍ତୁ :

## ଡଲ୍‌ଟନ୍ ଏଜେନ୍‌ସିଜ୍

ଚନ୍ଦାମାମା ବିଲ୍‌ଡିଙ୍ଗ୍‌ସ୍,

ବଡପଲନୀ, ମାଡ୍ରାସ-୬୦୦୦୨୬